# ଶିଶୁର ବିକାଶ



ଡକ୍ଟର-ଚନ୍ଦ୍ରଶେଖର ମହାନ୍ତି

ଲେଖକ—

ଅଧ୍ୟାପକ ଡକ୍ଟର ଜୟକୃଷ୍ଣ ମହାନ୍ତି,
ଏମ୍. ବି., ବି. ଏସ୍., ଏମ୍. ଡି. (ନିଉଜିଲାଣ୍ଡ),
ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ,
କଟକ—୧



ପ୍ରଥମ ମୁଦ୍ରଣ—୧୦୦୦
୧୯୭୦ ମସିହା

ମୁଦ୍ରାକର

ଶ୍ରୀ ସଇମୋହନ ଦାସ
ଉଟର ପ୍ରେସ, କଟକ-୧

ପ୍ରକାଶକ

କଟକ ବୁକ୍ ଷ୍ଟଲ
ବାଲୁବଜାର, କଟକ-୨

ମୂଲ୍ୟ— ଏକଟଙ୍କା ପଚିଶ ନୂଆ ପଇସା
ଅତିରିକ୍ତ ବନ୍ଧେଇ ପଚିଶ ନୂଆ ପଇସା

# ଉପହାର



ଶ୍ରୀଯୁକ୍ତ/ଶ୍ରୀମତୀ......................

..........ଙ୍କ କରରେ

ସ୍ନେହ/ଶ୍ରଦ୍ଧା/ଭକ୍ତିର ନିଦର୍ଶନ ସ୍ୱରୂପ

'ଶିଶୁର ବକାଶ' ଖଣ୍ଡି

ଅର୍ପଣ କଲି—

..................

ତା..................

# ଉତ୍ସର୍ଗ

ଯାହାଙ୍କ ଆଦର୍ଶରେ ମୋର ଜୀବନ ଗଢ଼ା ସେହି
ପରମାରାଧ୍ୟ ପରଲୋକଗତ ପିତୃଦେବ
ଅନନ୍ତ ଚରଣ ମହାନ୍ତଙ୍କ
ପ ବି ତ୍ର ସ୍ମୃ ତି
ଉଦ୍ଦେଶ୍ୟରେ...

# ନିଜ କଥା

ସତର ବର୍ଷ ତଳର କଥା । କର୍ଷେ ଦୁ ବର୍ଷ ଅଗରୁ ବୈଜ୍ଞାନିକ ଗବେଷଣା ଆରମ୍ଭ କରିଥିଲେ ହେଁ, ସେଥିରେ ପୂରା ଆତ୍ମପ୍ରତ୍ୟୟ ଆସି ନ ଥାଏ । ତେଣୁ ବଡ ସନ୍ତର୍ପଣରେ ଗବେଷଣାର ଫଳାଫଳ ସଂବଳିତ ମୋର ପ୍ରଥମ ଲେଖାଟି ଇଣ୍ଡିଅନ ମେଡ଼ିକାଲ୍ ଗେଜେଟ୍‌କୁ (Indian Medical Gazettee) ପଠାଇଲି । ଲେଖାଟି ଗୃହୀତ ହେବ କି ନାହିଁ, ଆଶା ଓ ଆଶଙ୍କା ଭିତରେ ଅପେକ୍ଷା କରିଥାଏ । ଲେଖାଟି ଯେ କେବଳ ପ୍ରକାଶିତ ହେଲା, ତା' ନୁହେଁ, ବର୍ଷେ ଦୁ ବର୍ଷ ଭିତରେ ଦେଶ ବିଦେଶର ବୈଜ୍ଞାନିକ ପତ୍ରପତ୍ରିକା ଓ ପାଠ୍ୟ ପୁସ୍ତକରେ ତା'ର ସାରାଂଶ ପ୍ରକାଶ ପାଇଲା । ଏଥିରେ ମୋର ଆତ୍ମପ୍ରତ୍ୟୟ ଦୃଢ଼ହେଲା । ସେଇ ଦିନଠୁଁ ଅଧିକ ବିଶ୍ୱାସ ନେଇ ବୈଜ୍ଞାନିକ ଗବେଷଣାରେ ଲାଗିଗଲି । ଫଳରେ ଆଜଯାଏ ପ୍ରାୟ ପଚାଶଟି ସନ୍ଦର୍ଭ ଦେଶବିଦେଶର ବୈଜ୍ଞାନିକ ପତ୍ରପତ୍ରିକାରେ ପ୍ରକାଶ କରି ପାରିଛି ।

ଠିକ୍ ସେହିପରି, ମୋର ଅବସର ବିନୋଦନର ପ୍ରଧାନ ଅବଲମ୍ବନ, ସାହିତ୍ୟ କ୍ଷେତ୍ରରେ ଆଶା ଆଶଙ୍କା ଭିତରେ ମୋର ପ୍ରଥମ ପୁସ୍ତକ "ବୋଇତ ଯାତ୍ରୀ", ଗତବର୍ଷ ପ୍ରକାଶ କଲି । ସେ କୃତିଟି ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ହେବାରୁ ମୁଁ ବିଶେଷ ଉତ୍ସାହିତ ହେବା ସଙ୍ଗେ ସଙ୍ଗେ ମୋର ଅନ୍ୟାନ୍ୟ ପାଣ୍ଡୁଲିପି ଗୁଡ଼ିକ ପ୍ରକାଶ କରିବାକୁ ମନବଳାଇଛି ।

ପ୍ରକୃତ ଓ ପରିସ୍ଥିତି (nature and nurture) ବ୍ୟକ୍ତିତ୍ୱର ବିକାଶ ନିର୍ଦ୍ଧାରଣ କରେ । ଫଳିତ ମନୋବିଜ୍ଞାନ (applied psychology) ଅନୁସାରେ ପରିସ୍ଥିତିକୁ ନିୟନ୍ତ୍ରଣ କରି ଜନ୍ମଗତ କଳାର ବିକାଶ କରାଯାଇ ପାରେ । ଯେପରି ମୃତ୍ତିକାକୁ ଛାଞ୍ଚରେ ପୂରାଇ ପ୍ରତିମା ତିଆରି କରାଯାଏ, ସେହିପରି ଶୈଶବ ଓ ବାଲ୍ୟ-କାଳରେ ପରିସ୍ଥିତିର ଛାଞ୍ଚରେ ବ୍ୟକ୍ତିତ୍ୱ ଗଢ଼ାଯାଇ ଥାଏ । ଏଥିଲାଗି ପିତାମାତା, ଅଭିଭାବକ ଓ ଶିକ୍ଷକମାନେ ପିଲାମାନଙ୍କର ମନୋବୃତ୍ତି ବୃଦ୍ଧି, ସେମାନଙ୍କର ଜନ୍ମଗତ କଳା ଓ ପ୍ରତିଭାର ବିକାଶରେ କିପରି ସହାୟକ ହେବେ, ତାର ସୂତ୍ର ଜାଣିବା ଆବଶ୍ୟକ ।

ଏହି ଧାରଣା ଯେବେ କୋଡ଼ିଏ ବର୍ଷ ତଳେ ନିଜ ଉପରେ ପିତୃତ୍ୱର ଗୁରୁଦାୟିତ୍ୱ ପଡ଼ିବା ଅନ୍ତେ ସେ ଦାୟିତ୍ୱ ତୁଲାଇବା ପାଇଁ ନିଜକୁ ଉପଯୁକ୍ତ କରିବାକୁ ପିଲାଙ୍କ ମନସ୍ତତ୍ତ୍ୱ, ଶିକ୍ଷା ଦୀକ୍ଷା ଓ ଲାଳନ ପାଳନ ବିଷୟରେ ଚର୍ଚ୍ଚା ଆରମ୍ଭ କରିଥିଲି । ମତେ ଏସବୁ ଏତେ ଭଲ ଲାଗିଲା ଯେ, ମୁଁ ଏ ବିଷୟରେ ଓଡ଼ିଆରେ ତିନିଖଣ୍ଡି ବହି ଲେଖି ପକାଇଲି । ବହିଗୁଡ଼ି ଅଜଣାଏ ପାଣ୍ଡୁଲିପି ଅବସ୍ଥାରେ ରହିଥିଲା । ମୋର ପ୍ରଥମ ପ୍ରକାଶିତ ପୁସ୍ତକ "ବୋଇତ ଯାତ୍ରୀ" ଆଶାତୀତ ଭାବେ ଆଦୃତ ହେବାରୁ ଆଜି ଏ "ଶିଶୁର ବିକାଶ" ପୁସ୍ତକ ଖଣ୍ଡି ପ୍ରକାଶ କରିବାକୁ ସାହସ କଲି ।

ପରେ ଏ ଶ୍ରେଣୀର ଅନ୍ୟ ଦୁଇଟି ପାଣ୍ଡୁଲିପି ପ୍ରକାଶ କରିବାର ପରିକଳ୍ପନା କରୁଛି ।

ମେଡିକାଲ କଲେଜ, କଟକ
ତା ୫-୯-୬୦ ଖ୍ରୀ

ବିନୀତ
ଜୟକୃଷ୍ଣ ମହାନ୍ତି

( ଏକ )

# ଶଙ୍କା ସଂକ୍ରମଣର ନିବାରଣ

**Prevention is better than Cure.**

ରୋଗ ହେଲେ ଆରୋଗ୍ୟ କରିଦେବା ଭଲ କଥା । କିନ୍ତୁ ରୋଗର ଆକ୍ରମଣକୁ ନିବାରଣ କରିବା ବୁଦ୍ଧିମାନର କାର୍ଯ୍ୟ । ଧାନକ୍ଷେତରେ ବାଢୁଙ୍ଗା ହେଲେ ତାକୁ ଚାଣ୍ଟି ଉପାଡ଼ି ଦେବା କୃଷୀର କର୍ତ୍ତବ୍ୟ; କିନ୍ତୁ କ୍ଷେତରେ ଯେପରି ବାଢୁଙ୍ଗା ଜାତ ନ ହୁଏ, ସେଥିପ୍ରତି ସାବଧାନ ରହି ମୂଳରୁ ତହିଁର ବ୍ୟବସ୍ଥା କରିବା ଅଭିଜ୍ଞ କୃଷକର କର୍ମ । ସେହିପରି ମନରେ ଶଙ୍କା ଜାତ ହେଲେ ତାକୁ ଚେଷ୍ଟା କରି ଦୂର କରିବା ଉଚିତ, କିନ୍ତୁ ଆରମ୍ଭରୁ ମନରେ ଯେପରି ଶଙ୍କା ସଂକ୍ରମଣ ନ ହୁଏ, ତହିଁର ଉପାୟ ଅବଲମ୍ବନ କରିବା ଚତୁର ଲୋକର କାର୍ଯ୍ୟ ।

ଶଙ୍କା ମନୁଷ୍ୟର ସ୍ୱାଭାବିକ ଦୁର୍ଗୁଣ ନୁହେଁ । ଶିଶୁ ଏ ଦୋଷ ଦେଇ ଜନ୍ମ ହୋଇ ନ ଥାଏ । କେବଳ ଅପରିଣାମ-ଦର୍ଶୀ ଶିକ୍ଷା

ବା ପରିସ୍ଥିତିର ଫଳରେ ତା'ର ମନରେ ଏ ବ୍ୟାଧି ପ୍ରବେଶ କରେ । ଶିକ୍ଷା ବୋଇଲେ ଏଠାରେ ପାଠ ପଢ଼ା ବୁଝିବାକୁ ହେବ ନାହିଁ । ଶିଶୁ ଜନ୍ମହେବା ମାତ୍ରେ ତା'ର ଶିକ୍ଷା ଆରମ୍ଭ ହୁଏ । ତା'ର ପାଞ୍ଚଟି ଇନ୍ଦ୍ରିୟ ସାହାଯ୍ୟରେ ସେ ଶିକ୍ଷା ଲାଭ କରେ । ସେ ଯାହା ଦେଖେ, ଶୁଣେ, ଘ୍ରାଣ କରେ, ସ୍ପର୍ଶକରେ ବା ଆସ୍ୱାଦନ କରେ, ସେ ସବୁ ଅନୁଭୂତ ତାର ମସ୍ତିଷ୍କରେ ଚିରଜୀବନ ପାଇଁ ସଞ୍ଚିତ ରହେ । ପ୍ରତ୍ୟେକ ବସ୍ତୁର ଚିହ୍ନ ସଙ୍ଗେ, ସେ ବସ୍ତୁର ଗୁଣ ତା'ର ମସ୍ତିଷ୍କରେ ଅଙ୍କିତ ଓ ଲିପିବଦ୍ଧ ଥାଏ । ସେହି ସବୁ ବସ୍ତୁର ଛବି ଓ ଗୁଣକୁ ନିଜର ସ୍ମୃତିକୁ ଆଣି, ସେ ଗୁଡ଼ିକୁ ଚିହ୍ନିବା ହେଉଛି ତା'ର ଜ୍ଞାନ ।

ଯେଉଁ ବନ୍ୟ ଜନ୍ତୁମାନେ ନିଜେ କିମ୍ବା ଯେଉଁ ଜନ୍ତୁମାନଙ୍କର ପୂର୍ବପୁରୁଷ କେବେହେଲେ ମନୁଷ୍ୟର ସଂସର୍ଗରେ ଆସି ନ ଥାନ୍ତି ସେମାନେ ତାକୁ ଭୟ କରନ୍ତି ନାହିଁ । ଥରେ ସେମାନେ ମନୁଷ୍ୟର ସଂସର୍ଗରେ ଆସି, ତାହାଦ୍ୱାରା ଆଘାତ ପ୍ରାପ୍ତ ହେଲେ ତାକୁ ଭୟ କରନ୍ତି ଓ ତା'ଠାରୁ ଦୂରରେ ରହିବାକୁ ଚେଷ୍ଟା କରନ୍ତି । କାରଣ ତାଙ୍କର ପୂର୍ବ ଅଭିଜ୍ଞତାରୁ ସେମାନେ ବୁଝିପାରନ୍ତି ଯେ ମନୁଷ୍ୟ ସେମାନଙ୍କର ଶତ୍ରୁ, ସେ ସେମାନଙ୍କୁ ବିନାଶ କରେ । ତେଣୁ ମନୁଷ୍ୟ ଦେଖିଲେ ସେମାନଙ୍କର ଭୟ ଜାତ ହୁଏ । ଅପରିଣାମଦର୍ଶୀ ଶିକ୍ଷା ଯୋଗେ ଶିଶୁର ମନରେ ଏହିପରି ଶଙ୍କାର ସଞ୍ଚାର ହୁଏ ।

ଶିଶୁର ପିତାମାତା, ଶିକ୍ଷକ, ଅବେକ୍ଷକ ଓ ପରିସ୍ଥିତି ଏଥିପାଇଁ ସମ୍ପୂର୍ଣ୍ଣ ଦାୟୀ । ଅନେକ ସମୟରେ ଦେଖାଯାଇଥାଏ ଯେ ବୁଢ଼ୀମା, ଧାଈ ମା' ଓ ଅଶିକ୍ଷିତା ମାଆମାନେ ଶିଶୁ ଅଝଟ ହେଲେ, ଅଂଧାର ଗୁଡ଼ୁଗୁଡ଼ୁ, ବାଘ ଭାଲୁ, ଭୂତ, ପ୍ରେତ, ଡାଆଣୀ, ଡକୁଣୀ, ପ୍ରଭୃତି

ଭୟଙ୍କର ବାସ୍ତବ ଓ କାଳ୍ପନିକ ଜୀବ ଜନ୍ତୁଙ୍କର ନାମ ଉଚ୍ଚାରଣ କରି ସେମାନଙ୍କ ମନରେ ଭୟର ସଞ୍ଚାର କରି ସେମାନଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରିଥାନ୍ତି । କିନ୍ତୁ ସେମାନେ ବୁଝି ପାରନ୍ତି ନାହିଁ ଯେ ଏହାଦ୍ୱାରା ସେମାନେ ସେମାନଙ୍କର ଅଜ୍ଞ ଅଦରର ଶିଶୁଟିର ସର୍ବନାଶ କରୁଛନ୍ତି । ପିତାମାତା ଓ ଆତ୍ମୀୟ ସ୍ୱଜନ ଶିଶୁର ମନରେ ଏପରି ଭୟର ସଞ୍ଚାର କରିବା ପରିବର୍ତ୍ତେ ତା'ପାଇଁ ଏପରି ପରିସ୍ଥିତି ଓ ଆବେଷ୍ଟନୀ ସୃଷ୍ଟି କରିବା ଉଚିତ ଯହିଁରେ କୌଣସି ମାତ୍ର ଭୟର କାରଣ ନ ଥିବ । ଏଥିପାଇଁ ପିତାମାତା, ଆତ୍ମୀୟ ସ୍ୱଜନ ଓ ଶିକ୍ଷକମାନଙ୍କୁ କଠୋର ସାଧନା କରିବାକୁ ପଡ଼ିବ ।

ପ୍ରଥମେ ନିଜକୁ ସଂଶୋଧନ କରିବାକୁ ପଡ଼ିବ, ତା' ପରେ ବାହାରୁ ପିଲା ଯେପରି କୌଣସି ଭୟ ନ ପାଏ, ସେଥିପାଇଁ ସର୍ବଦା ସତର୍କ ଓ ଜାଗ୍ରତ ରହିବାକୁ ହେବ । ଭୟପାଇଁ ଯେ ବ୍ୟବସ୍ଥା ଶଙ୍କା ପାଇଁ ମଧ୍ୟ ସେହିପରି ବ୍ୟବସ୍ଥା ଓ ସତର୍କତା ଆବଶ୍ୟକ । ତା' ନହେଲେ ଥରେ ଶଙ୍କାର ବିଷବୀଜ ଶିଶୁର ହୃଦୟରେ ରୋପିତ ହେଲେ ତାହା ଅଙ୍କୁରିତ ହୋଇ କାଳକ୍ରମେ ବିଶାଳ ବୃକ୍ଷରେ ପରିଣତ ହୁଏ ଏବଂ ତାର ବିଷମୟ ଫଳରେ ଶିଶୁର ଜୀବନ ନଷ୍ଟ କରିଦିଏ । ଅବଶ୍ୟ ଯଥା ସମୟରେ ଏ ବିଷ ବୃକ୍ଷର ଉତ୍ପାଟନ କଲେ ଶିଶୁ ତା'ର ଶୋଚନୀୟ ପରିଣାମରୁ ରକ୍ଷାପାଏ ।

ମନରେ ଶଙ୍କା ସଂଚ୍ଚାର ହେଲେ ଅନ୍ୟ ସ୍ୱଗୁଣ ଗୁଡ଼ିକର ବିକାଶ ହୋଇପାରେ ନାହିଁ । ଧାନ କିଆରୀରେ ବାଲୁଙ୍ଗା ରହିଲେ ଯେପରି ଧାନଗଛ ଉଧାଏ ନାହିଁ, ସେହିପରି ମନରେ ଶଙ୍କା ଜାତ ହେଲେ ଅନ୍ୟ ସ୍ୱଗୁଣ ଗୁଡ଼ିକର ବିକାଶ ହୁଏ ନାହିଁ । ତେଣୁ ସବୁ ଓ ସତର୍କତାର ସହିତ ମନରେ ଯେପରି ଶଙ୍କା ରୂପକ ବାଲୁଙ୍ଗାର ଉତ୍ପତ୍ତି ନ ହୁଏ, ତାର ଉପାୟ ଅବଲମ୍ବନ କରିବାକୁ ହେବ ।

ସମସ୍ତ ସତର୍କତା ସତ୍ତ୍ୱେ ଯଦି ଏହାର ଉତ୍ପତ୍ତି ହୁଏ, ତେବେ ଅବସ୍ଥାରୁ ମୂଳୋତ୍ପାଟନ କରି ଏହାକୁ ଦୂର କରିବାକୁ ହେବ ।

ପରନ୍ତୁ ଶିଶୁକୁ ଅବସ୍ଥାରୁ ନିଜର ଦାୟିତ୍ୱ ବୁଝିବାକୁ ଓ ନିଜର ବ୍ୟକ୍ତିତ୍ୱ ପାଇଁ ଗର୍ବ ଅନୁଭବ କରିବାକୁ ଶିକ୍ଷା ଦେବାର ଦାୟିତ୍ୱ ପିତା ମାତାଙ୍କ ଉପରେ ନ୍ୟସ୍ତ । କିନ୍ତୁ ସେ ଯେପରି ନିଜକୁ ଅନ୍ୟମାନଙ୍କ ଅପେକ୍ଷା ଶ୍ରେଷ୍ଠ ନ ଭାବେ ଓ ଅଯଥା ଗର୍ବ ଓ ଅସ୍ମିତା ନ କରେ, ସେଥିପାଇଁ ସାବଧାନ ହେବାକୁ ହେବ । ତା'ର ଚତୁର୍ଦ୍ଦିଗରେ ଥିବା ବସ୍ତୁ ବିଷୟରେ ଅପଣାର ଚେଷ୍ଟା, ବିଚାର ଓ ବୁଦ୍ଧି ବଳରେ ଜ୍ଞାନ ଲାଭ କରିବାକୁ ତାକୁ ସ୍ୱାଧୀନତା ଦେବ । ଆବଶ୍ୟକ ପଡ଼ିଲେ କୌଣସି ବିଷୟରେ ସିଦ୍ଧାନ୍ତରେ ଉପନୀତ ହେବାକୁ ତା'କୁ ସାହାଯ୍ୟ କରିବ । କିନ୍ତୁ ତମର ସିଦ୍ଧାନ୍ତ ତା'ର ମନ ଉପରେ ଚାପି ଦେବ ନାହିଁ । ଏହା କଲେ ତା'ର ଆତ୍ମ-ନିର୍ଭର-ଶୀଳତାର ବିକାଶ ହୁଏ ନାହିଁ । ସେ ପରମୁଖାପେକ୍ଷୀ ହୋଇ ପଡ଼େ । ଗୁରୁଜନମାନଙ୍କ ଉପରେ ନିର୍ଭର ନ କରି ନିଜେ ନିଜର ତତ୍ତ୍ୱନେବାକୁ ଶିଶୁକୁ ଶିକ୍ଷା ଦେବ । ଅନେକ ସମୟରେ ଅଭିଭାବକର ସାହାଯ୍ୟ ବିନା କୌଣସି ସିଦ୍ଧାନ୍ତ ନ କରିବା ଅଭ୍ୟାସ ରହିଗଲେ, ଶିଶୁର ମନରେ ଶଙ୍କା ଜାତ ହୁଏ ଓ ସେ ଭବିଷ୍ୟତରେ ସ୍ୱତନ୍ତ୍ର ଓ ସ୍ୱାଧୀନଭାବେ କୌଣସି କାର୍ଯ୍ୟ କରିବାରେ ଶଙ୍କାନ୍ୱିତ ହୁଏ ।

କୌଣସି ଦୋଷ ବା ତ୍ରୁଟି ଲାଗି ଶିଶୁକୁ ଭର୍ତ୍ସନା କରିବ ନାହିଁ । ତାର ମନୋବୃତ୍ତିକୁ ଅନୁସରଣ କରି ତାକୁ ସାହାଯ୍ୟ କରିବ, ଯେପରିକି ସେ ନିଜର ଭ୍ରାନ୍ତି ବୁଝିପାରି ପ୍ରକୃତ ସତ୍ୟ ଉପଲବ୍ଧି କରି ପାରିବ ।

କଠୋର ଶାସନ, ଗାଳି ଓ ଧମକ ଶିଶୁର ଦୋଷ ସଂଶୋଧନ କରେ ନାହିଁ, ବରଂ ଦୋଷ ବୃଦ୍ଧି କରେ । ଯେଉଁ ପିଲା ପିତା, ମାତା ଓ ଶିକ୍ଷକମାନଙ୍କ ଆଗରେ ବସ୍ତ କମ୍ପିତ, ତା'ର ମନୋବୃତ୍ତିର ବିକାଶ ହୁଏ ନାହିଁ । ଭୁଲ କରିବା ପିଲାଙ୍କ ପକ୍ଷେ ସ୍ୱାଭାବିକ କଥା । କିନ୍ତୁ ଏ ଭୁଲ ଲାଗି ଯଦି ସେମାନେ ଭର୍ତ୍ସନା ଶୁଣନ୍ତି ତେବେ ତାଙ୍କର ମନ ଅସ୍ଥିର ଓ ସନ୍ଦେହୀ ହୋଇଉଠେ । କାରଣ ଭୁଲ ନ କରିବାକୁ ଶତଚେଷ୍ଟା କଲେ ସୁଦ୍ଧା, ସେମାନେ ଭୁଲ କରନ୍ତି । ତେଣୁ ତା'ର ପ୍ରତ୍ୟେକ କାର୍ଯ୍ୟରେ ପିତାମାତା ଦୋଷ ଦେଖାଇ ଦେବାର ଦେଖି ଓ ଯାହା କିଛି କଲେ ତହିଁରେ ଗାଳି ଭର୍ତ୍ସନା ଶୁଣି, ସେ ନିଜକୁ ଅବିଶ୍ୱାସ କରେ । ତା'ର ଆତ୍ମ-ପ୍ରତ୍ୟୟ ଲୋପ ହୁଏ । ଏ ଭର୍ତ୍ସନା ଓ ଶାସନର କାରଣ ସେ ବୁଝିପାରେ ନାହିଁ । ଅବଶେଷରେ ବିନା କାରଣରେ ଏ ଭର୍ତ୍ସନା ଶୁଣିବାକୁ ହେଉଛି ବୋଲି ତା'ର ଧାରଣା ହୁଏ । ସେ ଏହାର ବିରୁଦ୍ଧରେ ଯଦି ବିଦ୍ରୋହ ନ କରେ ତେବେ ଏ କଥା ନିଶ୍ଚୟ ଯେ ଶଙ୍କା ରୂପକ ବ୍ୟାଧି ତା'ର ମନକୁ ଆକ୍ରମଣ କରିବ ଓ ତା'ର ଜୀବନ ବିଫଳ ହେବ ।

ପିଲାମାନଙ୍କ ମନରେ ଆତ୍ମ-ପ୍ରତ୍ୟୟ ଓ ଆତ୍ମବିଶ୍ୱାସ ଜାତ କରାଇ ଦେଲେ ଶଙ୍କା ଆପେ ଆପେ ଦୂର ହୋଇଯାଏ । ଅନ୍ୟମାନେ ତା'ର ଭାବନା ବୁଝି ନ ପାରିବା ଭୟରେ ପିଲା ଯଦି ତା'ର ମନୋଭାବ ପ୍ରକାଶ କରିବାକୁ କୁଣ୍ଠାବୋଧକରେ—ତେବେ ଏହା ତାହା ପକ୍ଷରେ ମାରାତ୍ମକ । ଆପଣାର ମନୋଭାବ ପ୍ରକାଶ କରିବାକୁ ପିଲାଙ୍କୁ ସର୍ବଦା ଉତ୍ସାହ ଦେବ । ଶିଶୁ ତା'ର ଚିଲିକିଆ କଥାରେ ଯାହା କିଛି ପଚାରେ ମନଧ୍ୟାନ ଦେଇ ସେ ସବୁ ଶୁଣିବ ଓ ତା'ର ଯଥାଯଥ ଉତ୍ତର ଦେବ । ତା'ର ଏ ଚିଲିକିଆ କଥାର

ଉତ୍ତର ନ ଦେବା ବା ଏଣୁ ତେଣୁ କହି ପ୍ରବଞ୍ଚନା କରିବାକୁ ଚେଷ୍ଟା କରିବା କିମ୍ବା ଅବଜ୍ଞାରେ ଉତ୍ତର ଦେବା ଦ୍ୱାରା ଆମ୍ଭେ ତାକୁ ତା'ର ବୁଦ୍ଧି ନିକୃଷ୍ଟ ବୋଲି ଜଣାଇ ଦେଉ । ସେ ନିଜ ବୁଦ୍ଧିର ନିକୃଷ୍ଟତା ବିଷୟରେ ଜାଣି ପାରିଲେ ଆପଣାକୁ ହୀନ ଓ ନିକୃଷ୍ଟ ମନେକରି ପ୍ରତ୍ୟେକ କାର୍ଯ୍ୟରେ ଓ କଥାରେ ଶଙ୍କାନ୍ୱିତ ହୁଏ । ଏହିଠାରେ ଶଙ୍କା ତା'ର ମନରେ ପ୍ରବେଶ କରେ । ନିଜକୁ ହୀନ ଓ ଅଧମ ମନେ କଲେ ଆତ୍ମବିଶ୍ୱାସ ଲୋପ ହୁଏ ।

ଏଣୁ ପିଲାମାନଙ୍କ ସଙ୍ଗେ ଠିକ୍ ସାନ୍ନିଧ୍ୟ ସ୍ତରରେ ମିଳାମିଶା କରନ୍ତୁ; ଯେପରି କି ବୟସର ପାର୍ଥକ୍ୟ ସେମାନେ ବୁଝିପାରିବେ ନାହିଁ । ଏପରି କଲେ ସେମାନଙ୍କୁ ଅଭିଭାବକତ୍ୱ ଭଲ ଲାଗିବ । ସେମାନେ ଅଭିଭାବକଙ୍କୁ ଭୟ କରିବେ ନାହିଁ । ତାଙ୍କୁ ଅଶ୍ରୟଦାତା ଓ ଉପଦେଶକ ରୂପେ ଗ୍ରହଣ କରିବେ । ଅଭିଭାବକମାନଙ୍କ ପ୍ରତି ସେମାନଙ୍କର ବିଶ୍ୱାସ ବୃଦ୍ଧି ହେବ । ଏହା ଫଳରେ ଅଭିଭାବକଙ୍କ ଠାରୁ ତିରସ୍କାର ବଦଳରେ ଉପଦେଶ ପାଇ ସେଗୁଡିକ ପାଳନ କରିବାକୁ ସେମାନେ ଶ୍ରଦ୍ଧା ଓ ଆନନ୍ଦର ସହ ଯତ୍ନ କରିବେ । ପିଲାର ମନରେ ଶଙ୍କାର ସଂକ୍ରମଣକୁ ନିବାରଣ କରିବାର ଗୋଟିଏ ଉତ୍କୃଷ୍ଟ ଉପାୟ ହେଉଛି ଯେ ତାକୁ ଅନେକଟା ସ୍ୱାଧୀନତା ଦେବ ଓ ସେ ସ୍ୱାଧୀନ ଭାବେ ନିଜ ଜ୍ଞାନର ପରିସର ମଧ୍ୟରେ ଯେପରି କୌଣସି ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିପାରେ ତା'ର କୌଶଳ ତାକୁ ବତେଇ ଦେବ ।

କେତେକ ଲୋକ କହନ୍ତି ପିଲାମାନଙ୍କୁ ସେମାନଙ୍କର ମତାମତ ପ୍ରକାଶ କରିବାକୁ ଦେବ ନାହିଁ ।

ଏ କଥା ନିଶ୍ଚୟ ଯେ ପ୍ରତ୍ୟେକ କଥାରେ ନିଜର ମତ ଲୁଚିବାକୁ ପିଲାମାନଙ୍କୁ ପ୍ରଶ୍ରୟ ଦେବା ଅନୁଚିତ । କିନ୍ତୁ କୌଣସି

ବିଷୟରେ ନିଜର ବକ୍ତବ୍ୟକୁ ପରିସ୍ଫୁଟନା କରିବାକୁ ସ୍ୱାଧୀନତା ନ ଦେବା ସେମାନଙ୍କ ପକ୍ଷେ ମାରାତ୍ମକ । ଅଥଚ ମଧ୍ୟ ସୀମାଲଙ୍ଘନ ନକରି ଅବଶ୍ୟକୀୟ ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ପିଲାମାନଙ୍କୁ ଶିକ୍ଷା ଦେବା ଚତୁର ଓ ଜ୍ଞାନୀ ପିତାମାତା ଓ ଶିକ୍ଷକଙ୍କର କର୍ତ୍ତବ୍ୟ ।

ପିଲାମାନେ ବୁଝିପାରିବା ଭଳି ସରଳ ବିଷୟ ଗୁଡ଼ିକ ସେମାନଙ୍କ ସଙ୍ଗେ ଚର୍ଚ୍ଚା କରିବ । ଉକ୍ତ ବିଷୟରେ ସେମାନଙ୍କୁ ନିଜ ନିଜର ବୁଦ୍ଧି ଓ ବିଚାର ଶକ୍ତି ବଳରେ ସିଦ୍ଧାନ୍ତ କରିବାରେ ସାହାଯ୍ୟ କରିବ । ବଡ ବଡ ପଣ୍ଡିତ ଓ ଜ୍ଞାନୀ ଲୋକମାନଙ୍କ ସଙ୍ଗେ କଥାବାର୍ତ୍ତା ଓ ଯୁକ୍ତିତର୍କ କରିବାକୁ ପିଲାମାନଙ୍କୁ ସୁବିଧା ଓ ସୁଯୋଗ ଦେବ । ଏହା ସେମାନଙ୍କ ପକ୍ଷେ ସୁବର୍ଣ୍ଣ ସୁଯୋଗ । ଜ୍ଞାନୀ ଲୋକମାନଙ୍କ ସଙ୍ଗେ ଏହିପରି ମିଳାମିଶା କରି କୌଣସି ବିଷୟରେ ଚର୍ଚ୍ଚା କଲେ, ପିଲାମାନଙ୍କର ଜ୍ଞାନର ପରିସର ବଢ଼ିଯାଏ । ଏପରି ଶ୍ରେଣୀର ଲୋକେ, କୌଣସି ବିଷୟରେ ମତାମତ ଓ ସିଦ୍ଧାନ୍ତ କରିବାରେ ପିଲାମାନଙ୍କୁ ସାହାଯ୍ୟ କରନ୍ତି । ଅଜ ମଧ୍ୟ ପିଲାମାନଙ୍କର ମତାମତ ଓ ସିଦ୍ଧାନ୍ତର ସାରତ୍ୱ ସେମାନଙ୍କୁ ଦର୍ଶାଇ ଦେବା ଦ୍ୱାରା, ସେମାନଙ୍କୁ ଉତ୍ସାହିତ କରନ୍ତି । ଏହା ଦ୍ୱାରା ପିଲାମାନେ ନିଜର ମୂଲ୍ୟ ବୁଝି ପାରନ୍ତି ଓ କ୍ରମେ ସେମାନଙ୍କ ମନରେ ଆତ୍ମ-ପ୍ରତ୍ୟୟ ଦୃଢ଼ ହୋଇ ଉଠେ ।

ସରଳଭାବେ, ସୁନ୍ଦର ଭାଷାରେ ଓ ସଂକ୍ଷେପରେ ମନର ଭାବ ପ୍ରକାଶ କରିବାରେ ପିଲାମାନଙ୍କୁ ସାହାଯ୍ୟ କରିବ । ଏହା ସାଧନା ସାପେକ୍ଷ । କୌଣସି ଭାବ ପ୍ରକାଶ କରିବାରେ ପିଲାମାନେ ଅସମର୍ଥ ହେଲେ କିମ୍ବା ଯଥାଯଥ ଓ ସୁନ୍ଦର ଭାଷାରେ ସେ ଭାବ ପ୍ରକାଶ କରି ନ ପାରିଲେ ହଠାତ୍ ସେମାନଙ୍କୁ ଅବଶ୍ୟକୀୟ ଶବ୍ଦଗୁଡ଼ିକ କହି ଦେବ ନାହିଁ । ପିଲାଙ୍କୁ ଏପରି ଭାବେ ସୂଚିତ କରିବ,

ଯେପରି ସେ ଅବଶେଷରେ ନିଜେ ନିଜେ ସେଇ ସବୁ ଶବ୍ଦଗୁଡ଼ିକ ଧରି ପାରିବ ଓ ସ୍ୱତଃସ୍ଫୂର୍ତ୍ତ ଭାଷାରେ ସରଳଭାବେ ଆପଣାର ଭାବ ପ୍ରକାଶ କରି ପାରିବ ।

ଏହିପରି ଭାବେ ଶିକ୍ଷା ହେଲେ ପିଲା ସଂକ୍ଷେପରେ ଭାବ ପ୍ରକାଶ କରିପାରେ ଓ ତା'ର ବାବଦୂକତା (babbling) ଭାଙ୍ଗିଯାଏ । ଅନୁନାସିକ ବା ଖଣ୍ଡିତ ବାକ୍ୟରେ ଭାବ ପ୍ରକାଶ କରିବାକୁ କଦାପି ପିଲମାନଙ୍କୁ ପ୍ରଶ୍ରୟ ଦେବ ନାହିଁ । ପିଲା କୌଣସି ଶବ୍ଦ ଉଚ୍ଚାରଣ କରିବାରେ କଷ୍ଟବୋଧ କଲେ, ତାକୁ ବାରମ୍ବାର ସେ ଶବ୍ଦ ପରିଷ୍କାର ରୂପେ ଓ ଧୀରେ ଧୀରେ ଉଚ୍ଚାରଣ କରିବାକୁ ବତାଇ ଦେବ । ପିଲା ସେ ଶବ୍ଦଟି ଭଲରୂପେ ଉଚ୍ଚାରଣ କରିବା ପର୍ଯ୍ୟନ୍ତ ତାକୁ ଏହିପରି ଭାବରେ ବତାଇ ଦେଉଥିବ ।

ଶବ୍ଦ ଉଚ୍ଚାରଣରେ ପିଲମାନଙ୍କର ଏହିପରି ସାମାନ୍ୟ ଦୋଷଗୁଡ଼ିକ ସେମାନଙ୍କର ଆଳସ୍ୟ ଓ ପିତାମାତା ଓ ଶିକ୍ଷକ ପ୍ରଭୃତିଙ୍କର ଅବହେଳାରୁ ହୋଇଥାଏ । ଏ ବିଷୟରେ ଅମ୍ଭମାନଙ୍କୁ ବିଶେଷ ସାବଧାନ ହେବାକୁ ହେବ । କାରଣ ବାକ୍ ପଟୁତା ଜୀବନରେ ଅତ୍ୟନ୍ତ ଆବଶ୍ୟକୀୟ ଗୁଣ । ଏହାଛଡ଼ା ନିଜର ଭାବ ପ୍ରକାଶରେ ଅସମର୍ଥ ହେଲେ ପିଲର ମନରେ ଶଙ୍କାର ସଂକ୍ରମଣ ହୁଏ । ସେ ଭବିଷ୍ୟତରେ କୌଣସି କାର୍ଯ୍ୟ ସାଧନ କରିବାରେ ସମର୍ଥ ହୁଏ ନାହିଁ । କାରଣ ଯେଉଁମାନେ ଯଥାଯଥ ଭାଷାରେ ସରଳଭାବେ ନିଜ ମନର ଭାବ ପ୍ରକାଶ କରିବାରେ ଅସମର୍ଥ ହୁଅନ୍ତି, ସେମାନେ ସଭାସମିତିରେ ଓ ଲୋକମାନଙ୍କ ସମ୍ମୁଖରେ କଥା କହିବା ବେଳେ ଶଙ୍କାକୁଳ ହୋଇପଡ଼ନ୍ତି । ଯୁକ୍ତିତର୍କ କରିବାରେ ଓ ବକ୍ତୃତା ଦେବାରେ ନିଜେ ଅସମର୍ଥ ଓ ଅକ୍ଷମ ବୋଲି ସେମାନଙ୍କ ମନରେ ଧାରଣା ଦୃଢ଼ ହୁଏ । କୌଣସି ସଭାସମିତିରେ ଠିଆ ହେବା

ତେବେଳେ ଏହି ଧାରଣା ତାଙ୍କର ମନେ ପଡ଼ିଯାଏ ଓ ଶଙ୍କା ଉପସ୍ଥିତ ହୋଇ ସେମାନଙ୍କ ମନକୁ ଭୀତତ୍ରସ୍ତ କରେ । ସେମାନଙ୍କର କଣ୍ଠରୋଧ ହୁଏ । ତେଣୁ ସେମାନେ ହାସ୍ୟାସ୍ପଦ ହୁଅନ୍ତି । ଏ ଲୋକହସା ସେମାନଙ୍କୁ ଅଧିକ ବିଚଳିତ କରିଦିଏ ।

ଯେଉଁମାନେ ଯଥାଯଥ ଭାଷାରେ ନିଜ ମନର ଭାବ ପ୍ରକାଶ କରିବାକୁ ପିଲାଟି ଦିନରୁ ଅଭ୍ୟାସ କରି ନ ଥାନ୍ତି, ସେମାନେ କଥା କହିବା ବେଳେ ଶବ୍ଦଯୋଜନାରେ ଦ୍ୱିଧା ବୋଧ କରନ୍ତି । ଗୋଟିଏ ବାକ୍ୟରୁ ଅର୍ଦ୍ଧେକ ଉଚ୍ଚାରଣ କରି ଏହା ଯୁକ୍ତିଯୁକ୍ତ ହେଲା ନାହିଁ ବୋଲି ଆଶଙ୍କା କରି ପୁଣି ଅନ୍ୟ ଗୋଟିଏ ବାକ୍ୟ ଆରମ୍ଭ କରନ୍ତି । ସେ ବାକ୍ୟକୁ ମଧ୍ୟ ସେହିପରି ଅର୍ଦ୍ଧେକ ଉଚ୍ଚାରଣ କରି ସଂଶୟରେ ପଡ଼ି ଅଧିକ ଗୋଟିଏ ବାକ୍ୟ ଆରମ୍ଭ କରନ୍ତି । ତେଣୁ ଏ ଶ୍ରେଣୀର ଲୋକମାନେ ଖଣ୍ଡ ବାକ୍ୟ କହନ୍ତି ଓ କୌଣସି ମତେ ପରିଷ୍କାର ଭାବେ ନିଜର ଭାବ ପ୍ରକାଶ କରି ପାରନ୍ତି ନାହିଁ । ଏହିପରି ହେବାରୁ କ୍ରମେ ତାଙ୍କର ମନରେ ଶଙ୍କା ପ୍ରବେଶ ହୁଏ ଓ ସେମାନଙ୍କର ଜୀବନ ବିଫଳ ହୁଏ । ଅଧିକ ମଧ୍ୟ ନିଜର ଭାବନାକୁ ଘନୀଭୂତ ଓ ପୂର୍ଣ୍ଣାଙ୍ଗ ନ କରି, ଭାଷାରେ ପ୍ରକାଶ କରିବାକୁ ଗଲେ ଏହିପରି ଖଣ୍ଡବାକ୍ୟ ହୋଇଥାଏ । କାରଣ ଏପରି ଅବସ୍ଥାରେ ବକ୍ତବ୍ୟ ବିଷୟବସ୍ତୁର ପୂର୍ଣ୍ଣ ରୂପରେଖ ଭାବନାରେ ପ୍ରକାଶିତ ହୋଇ ନ ଥିବାରୁ ଭାଷାରେ ପ୍ରକାଶ କରିବା ସମ୍ଭବପର ହୁଏ ନାହିଁ ।

ଏ ଦୁଇଟି ଦୋଷରେ ଯେପରି ପିଲାମାନେ ଦୂଷିତ ନ ହୁଅନ୍ତି, ସେଥିପାଇଁ ଆରମ୍ଭରୁ ଦୃଷ୍ଟି ଦେବାକୁ ହେବ । କୌଣସି କଥା ବାକ୍ୟରେ ପ୍ରକାଶ କରିବା ପୂର୍ବରୁ ସେ ବିଷୟରେ ନିଜର ଭାବନାକୁ ଘନୀଭୂତ ଓ ପୂର୍ଣ୍ଣାଙ୍ଗ କରି ତା'ପରେ ବାକ୍ୟରେ ପ୍ରକାଶ

କରିବାକୁ ପିଲମାନଙ୍କୁ ଶିକ୍ଷା ଦେବ । ଅନୁମାୟ ନିଜର ଭାବ ପ୍ରକାଶ କରିବା ଭଳି ଉପଯୁକ୍ତ ଶବ୍ଦ ବ୍ୟବହାର କରିବାକୁ ପିଲମାନଙ୍କୁ ଉପଦେଶ ଦେବ । କେବଳ ଉପଦେଶ ଦେଲେ ଚଳିବ ନାହିଁ— ଏ ବିଷୟରେ ପିଲମାନେ ଯେପରି ସଫଳ ହୁଅନ୍ତି, ତାହା ଦେଖିବାକୁ ହେବ ଏବଂ ସାଧନାରେ ସେମାନଙ୍କୁ ସାହାଯ୍ୟ କରିବ । ପିଲ ନ ଜାଣିଥିବା ଗୋଟିଏ ଶବ୍ଦ ତାକୁ କହିଦେବାବେଳେ, ସେ ଯେପରି ଶବ୍ଦଟିର ଅର୍ଥ ଭଲରୂପେ ହୃଦୟଙ୍ଗମ କରେ, ସେଥିପ୍ରତି ଦୃଷ୍ଟି ରଖିବ । ଏପରି ବ୍ୟବସ୍ଥା କରିବ ଯାହାଦ୍ୱାରା ସେ ଏକାଧିକ ଇନ୍ଦ୍ରିୟ ଦ୍ୱାରା ସେ ଶବ୍ଦର ଅର୍ଥ ସମ୍ବନ୍ଧେ ଜ୍ଞାନ ଅହରଣ କରିପାରିବ । ଉଦାହରଣ ସ୍ୱରୂପ 'ମହୁ' କଣ ନଜାଣିଥିବା ପିଲକୁ ଏ ଶବ୍ଦଟି କହୁ ଦେବାବେଳେ, ତାକୁ ମହୁକୁ ଦେଖିବା, ଚାଖିବା, ସ୍ପର୍ଶ ଓ ଘ୍ରାଣ କରିବାର ସୁବିଧା ଦେବ । ସମ୍ଭବ ହେଲେ ମହୁ କେଉଁଠୁ ଅସେ ସେ କଥା ମହୁମାଛି ଓ ମହୁଫେଣା ଦେଖାଇ ତାକୁ ବୁଝାଇ ଦେବ । ଏପରି ଭାବେ କହିଦେଲେ ପିଲ ଚିରଜୀବନ ସେ ଶବ୍ଦ ଓ ତା'ର ଅର୍ଥ ମନେ ରଖିବ ।

ପିଲର ବାକ୍‌ପଟୁତା ବଢ଼ାଇବାକୁ ତା' ସଙ୍ଗେ ତା'ର ବୋଧଗମ୍ୟ କୌଣସି ବିଷୟରେ ଯୁକ୍ତି ତର୍କ କରିବା ଏକାନ୍ତ ଆବଶ୍ୟକ । କାରଣ ବାଗ୍ମିତା ଜୀବନ ସଂଗ୍ରାମରେ ଅମୋଘ ଅସ୍ତ୍ର ସ୍ୱରୂପ । ଯେ ନିଜର ମନୋଭାବ ପରିଷ୍କାର ରୂପେ ପ୍ରକାଶ କରି ପାରେ ନାହିଁ, ତାକୁ ଶଙ୍କା ବ୍ୟାଧି ଆକ୍ରମଣ କରେ । ଅବଶେଷରେ ସେ କୌଣସି କାର୍ଯ୍ୟ ସାଧନରେ ସମର୍ଥ ହୁଏ ନାହିଁ । ଅନେକ ସମୟରେ ଦେଖା ଯାଇଥାଏ ଯେ, ଗୋଟିଏ ଛାତ୍ର ଅନେକ ପଢ଼ିଛି, ସବୁ ବିଷୟ ଜାଣେ, ଅଥଚ ପରୀକ୍ଷକ ନିକଟରେ କିଛି କହି ପାରେ

ନାହିଁ । ଏହାର ପ୍ରଧାନ କାରଣ ଶଙ୍କା ଓ ସେଥିଯୋଗେ ବାକ୍‌ପଟୁତାର ଅଭାବ, ଏପରି ଶିଶୁର ଜୀବନ ବିଫଳ ହୁଏ ।

କଥାକଥାକେ ଶଙ୍କାନ୍ୱିତ ଲୋକର ମୁହଁ ରଙ୍ଗ ପଡ଼ିଯିବାର ଦେଖାଯାଏ । ମୂଳରେ ଏ ରୂପ ବିଲକ୍ଷଣକୁ ସେ ବିଶେଷ ଭୟ କରେ, କିନ୍ତୁ ଶଙ୍କାଗ୍ରସ୍ତ ହୋଇଥିବା ଯୋଗୁଁ ତାକୁ ବାରମ୍ବାର ଏ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼େ । ମନର ଅଶଙ୍କା ଓ ଆବେଗ ଯୋଗେ ଲୋକ ସମ୍ମୁଖରେ କଥା କହିବାବେଳେ ତା'ର ମୁଖ ବିବର୍ଣ୍ଣ ହୋଇଯାଏ । ଏକାକୀ ଥିଲେ ତା'ର ମୁଖରେ ଏପରି ବିଲକ୍ଷଣ ଦେଖାଯାଏ ନାହିଁ । କେବଳ ଅତୀତରେ ଘଟିଥିବା ଏହିପ୍ରକାର ଘଟନାର ସ୍ମରଣରେ, ନିର୍ଜନରେ ଥିବାବେଳେ ସୁଦ୍ଧା ତା'ର ମୁଖ ରଙ୍ଗର ଏ ରୂପ ପରିବର୍ତ୍ତନ ହୋଇଥାଏ । ତଥାପି ଏକାନ୍ତରେ ତାକୁ କେହି ଦେଖୁ ନାହାନ୍ତି ବୋଲି ତା'ର ଦୃଢ଼ ବିଶ୍ୱାସ ଥିଲେ ତା' ମୁଖରେ ଏ ବିଲକ୍ଷଣ ଦେଖାଯାଏ ନାହିଁ । ଶଙ୍କିତ ଲୋକର ଏତାଦୃଶ ମୁଖ ବିକାର ଅବସ୍ଥାକୁ ଅପେକ୍ଷା କରିବା ଉଚିତ । ଯେଉଁ ପରିସ୍ଥିତିରେ ତା'ର ଏପରି ବିଲକ୍ଷଣ ଦେଖାଯାଏ, କୌଶଳ କ୍ରମେ ତା'ର ଉପସ୍ଥିତିରେ ସେପରି ପରିସ୍ଥିତି ବାରମ୍ବାର ସୃଷ୍ଟି କଲେ କ୍ରମେ ତା'ର ଏ ଦୁର୍ବଳତା ଦୂରୀଭୂତ ହୁଏ । ଜଣେ ମନସ୍ତତ୍ତ୍ୱବିଦ୍ ଏହି ଉପାୟରେ ନିମ୍ନଲିଖିତ ଭାବେ ଜଣେ ଶଙ୍କାଗ୍ରସ୍ତା ମହିଳାକୁ କିପରି ଭଲ କରିଥିଲେ, ତାହା ତାଙ୍କ ଅତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି ।

"ମୋର ରକ୍ତ-ସମ୍ପର୍କୀୟା ସତ୍ ସ୍ୱଭାବ ସମ୍ପନ୍ନା ଜଣେ ମହିଳା ଥିଲେ । ତାଙ୍କର ସକଳ ସୁଗୁଣ ସତ୍ତ୍ୱେ ସେ ଶଙ୍କାନ୍ୱିତା ଥିଲେ । ଥରେ କଥାପ୍ରସଙ୍ଗରେ ତାଙ୍କର ମାଆ ଜଣେ ଭଦ୍ରବ୍ୟକ୍ତିଙ୍କ ନାମ ଉଚ୍ଚାରଣ କଲେ । ସେ ଭଦ୍ରବ୍ୟକ୍ତିଙ୍କର ନାମ ଶୁଣିବାମାତ୍ରେ ସଙ୍କୋଚଶୀଳା ରମଣୀଙ୍କର ମୁଖ ରକ୍ତାଭ ହୋଇଗଲା । କିନ୍ତୁ

ଭଦ୍ରବ୍ୟକ୍ତିଙ୍କ ନାମ ସଙ୍ଗେ, ତାଙ୍କର ନାମ ସମ୍ପୃକ୍ତ କରି କାଳେ କେହି ମିଥ୍ୟା ଅପବାଦ ସୃଷ୍ଟି କରିବ ବୋଲି, ତାଙ୍କର ଅଶଙ୍କା ହେଲା । ଏହି ଅଶଙ୍କା ଯୋଗେ ସେହି ଦିନଠାରୁ କଥା ପ୍ରସଙ୍ଗରେ ଉକ୍ତ ଭଦ୍ରବ୍ୟକ୍ତିଙ୍କର ନାମ ଶୁଣିଲେ ତାଙ୍କର ମୁଖ ରଙ୍ଗା ପଡ଼ିଯାଉଥିଲା । ସେ ଶତଚେଷ୍ଟା କଲେ ସୁଦ୍ଧା ନିଜର ଏ ଦୁର୍ବଳତା ଦୂରକରି ପାରିଲେ ନାହିଁ । ଶେଷରେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେଲା ।

ଦିନେ ଏ ସବୁ ବିଷୟ ମୋଠାରେ ପ୍ରକାଶ କରି, ସେ ମୋର ସାହାଯ୍ୟ ପ୍ରାର୍ଥନା କଲେ । ମୁଁ ତାଙ୍କୁ ଆରୋଗ୍ୟ କରିବାକୁ ଚେଷ୍ଟା କଲି । ପ୍ରଥମେ ଆମେ ଦୁଇଜଣ ନିରୋଳାରେ ଥିବାବେଳେ ମୁଁ ହଠାତ୍ ସେହି ଭଦ୍ରବ୍ୟକ୍ତିଙ୍କର ନାମ ଉଚ୍ଚାରଣ କରେ । ସଙ୍ଗେ ସଙ୍ଗେ ରମଣୀଙ୍କ ମୁଖ ଲୋହିତାଭ ହୋଇ ଉଠେ । ମୁଁ ପରର ମିନିଟ୍ ଛୁଡ଼ିଦିଏ । ତାଙ୍କର ଚିତ୍ତ ଚାଞ୍ଚଲ୍ୟ ପ୍ରଶମିତ ହୋଇଯାଏ । ପୁଣି ମୁଁ ହଠାତ୍ ସେ ଭଦ୍ରବ୍ୟକ୍ତିଙ୍କର ନାମ ଉଚ୍ଚାରଣ କରି ବସେ । ଏହିପରିଭାବରେ ବାରମ୍ବାର କରିବାରୁ କ୍ରମେ ତାଙ୍କ ମୁଖ ରଙ୍ଗା ପଡ଼ିବା ହ୍ରାସ ହେଲା ।

ଦ୍ୱିତୀୟ ଦିନ ତାଙ୍କୁ ଦେଖି ତାଙ୍କର କିପରି ଉନ୍ନତି ହୋଇଛି, ତାହା ବୁଝାଇ ଦେଲି । ତାଙ୍କର ଉତ୍ସାହ ବଢ଼ିଲା । ମୁଁ ପୂର୍ବଦିନ ପରି ସେହି ଭଦ୍ରବ୍ୟକ୍ତିଙ୍କର ନାମ ଥରକୁଥର ଉଚ୍ଚାରଣ କରି, ତାଙ୍କର ଅଶଙ୍କା ଦୂର କରିବାକୁ ଚେଷ୍ଟା କଲି । ଏହିପରିଭାବରେ କିଛିଦିନ କରିବା ଦ୍ୱାରା ଉକ୍ତ ରମଣୀଙ୍କର ଶଙ୍କା ସମ୍ପୂର୍ଣ୍ଣରୂପେ ବିଦୂରିତ ହେଲା । ତଦନନ୍ତର ଉକ୍ତ ଭଦ୍ରବ୍ୟକ୍ତିଙ୍କର ନାମ ପଡ଼ିଲେ ସୁଦ୍ଧା ତାଙ୍କ ଭାବ ଭଙ୍ଗୀ ଓ ମୁଖରେ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ଶଙ୍କା ଦୂରହେବାରୁ ସେ ପ୍ରକୃତିସ୍ଥ ହୋଇଥିଲେ ।"

ଶଙ୍କାଶୀଳ ଲୋକର ଶଙ୍କାକୁ ମୂଳରୁ ବିତାଡ଼ିତ କରିବାକୁ ହେବ । ତା' ନହେଲେ ତାହା କ୍ରମେ ବୃଦ୍ଧି ହେବ ଓ ପରିଣାମ ବିଷମୟ ହେବ । ଆରମ୍ଭରୁ ପିଲାମାନଙ୍କୁ ସଂସାର ଜଞ୍ଜାଳ ଓ ଜୀବନ ସଂଗ୍ରାମରେ ଅଭ୍ୟସ୍ତ କରି ନେବା ଉଚିତ । ନାନାଦି ସାଂସାରିକ ବିଷୟ ସରଳଭାବେ ସେମାନଙ୍କୁ ବୁଝାଇ ଦେବ ଓ ସେମାନଙ୍କର ବୁଦ୍ଧି ବିବେଚନା ଅନୁଯାୟୀ ଉକ୍ତ ବିଷୟମାନଙ୍କରେ ସ୍ୱୀୟ କର୍ତ୍ତବ୍ୟା-କର୍ତ୍ତବ୍ୟ ସ୍ଥିର କରିବାକୁ ସେମାନଙ୍କୁ ଶିକ୍ଷାଦେବ । ସେମାନଙ୍କର ସିଦ୍ଧାନ୍ତ ଭ୍ରମ ପ୍ରମାଦ ପୂର୍ଣ୍ଣ ହେଲେ, ସରଳଭାବେ ସେ ସବୁ ସେମାନଙ୍କୁ ଦର୍ଶାଇ ଦେବ ଓ ପ୍ରକୃତ କର୍ତ୍ତବ୍ୟ ବୁଝାଇଦେବ । ଏପରି କରିବାଦ୍ୱାରା ପିଲାମାନଙ୍କର ସାଂସାରିକ ଅଭିଜ୍ଞତା ଓ ଜ୍ଞାନ ବୃଦ୍ଧି ହୁଏ ଏବଂ ଭବିଷ୍ୟତ୍ ଜୀବନରେ କୌଣସି ବିଷୟରେ ସହସା ସିଦ୍ଧାନ୍ତ ଗ୍ରହଣ କରି କର୍ତ୍ତବ୍ୟ ନିରୂପଣ କରିବାକୁ ସେମାନଙ୍କର ଶକ୍ତି ଜନ୍ମେ । କିନ୍ତୁ ପିଲାମାନେ ବୁଝି ନ ପାରିବା ଭଳି ଗୁରୁତର ସାଂସାରିକ ସମସ୍ୟା ସେମାନଙ୍କ ସଙ୍ଗେ ଚର୍ଚ୍ଚା କରିବ ନାହିଁ ।

ପିଲାମାନଙ୍କର ସମସ୍ତ କାର୍ଯ୍ୟ ନିର୍ଦ୍ଦୋଷ ଓ ନିଖୁଣ ହେବା ଅସମ୍ଭବ । ସେମାନଙ୍କଠାରେ ଏପରି ଦାବି କରିବା ଅନୁଚିତ । ଏପରି କଲେ ସେମାନେ ବିଦ୍ରୋହ କରନ୍ତି, କିମ୍ବା ଉଦାସୀନ ହୋଇପଡ଼ନ୍ତି ଏବଂ ଅଧିକାଂଶ ସମୟରେ ଭଲ ପିଲାମାନଙ୍କର ମନରେ ଶଙ୍କା ପ୍ରବେଶ କରେ । କାରଣ ସେମାନେ ଅଭିଭାବକଙ୍କ ଆଶାନୁରୂପ କାର୍ଯ୍ୟ କରି ନ ପାରି ହତୋତ୍ସାହ ହୋଇପଡ଼ନ୍ତି । ଆଉ ମଧ୍ୟ ସେମାନଙ୍କର ଆତ୍ମବିଶ୍ୱାସ ଓ ଆତ୍ମପ୍ରତ୍ୟୟ ଲୋପ ହୁଏ ।

ପିଲାମାନଙ୍କୁ ସେମାନଙ୍କ ସମ୍ମୁଖରେ କଦାପି ନିନ୍ଦା କରିବ ନାହିଁ । ସେମାନଙ୍କର ଅସାମର୍ଥ୍ୟ ଓ ଅକ୍ଷମତା ପ୍ରଭୃତି ଦର୍ଶାଇବ

ନାହିଁ । ବରଂ ପ୍ରଶଂସା କରି ସେମାନଙ୍କୁ ଉତ୍ସାହିତ କରିବ । ହେଲେ ସେମାନଙ୍କର ଆତ୍ମ ପ୍ରତ୍ୟୟ, ଆତ୍ମବିଶ୍ୱାସ, ମନୋବଳ, ଇଚ୍ଛାଶକ୍ତି ଓ ପ୍ରେରଣା ପ୍ରଭୃତି ବୃଦ୍ଧି ହେବ । କେତେକ ପିତାମାତା ପିଲଙ୍କର ମୁଣ୍ଡ ବିଗିଡିଯିବ ବୋଲି, ମୁହେଁ ମୁହେଁ ସେମାନଙ୍କର ନିନ୍ଦା କରନ୍ତି, ପ୍ରତ୍ୟେକ ବିଷୟରେ ସେମାନଙ୍କର ଅସମର୍ଥତା ଜଣାଇ ଦିଅନ୍ତି । ଏପରି ପିତାମାତା ବୁଝି ପାରନ୍ତି ନାହିଁ ଯେ, ଏହାଦ୍ୱାରା ସେମାନେ ତାଙ୍କ ସନ୍ତାନର ଉନ୍ନତି ମୂଳରେ କୁଠାରାଘାତ କରନ୍ତି ।

ଜୀବନରେ ସୌନ୍ଦର୍ଯ୍ୟର କ୍ଷମତା ଅସୀମ । ତେଣୁ ପିଲାମାନଙ୍କୁ ଆପଣାର ଶକ୍ତି ମୁତାବକ ଭଲ ବେଶଭୂଷା ଦେବାରେ କୁଣ୍ଠିତ ହେବ ନାହିଁ । ବ୍ୟୟ ସଙ୍କୋଚ ଲାଗି ପିଲାମାନଙ୍କୁ ଅସୁନ୍ଦର ଓ ଅପରିଷ୍କାର ପୋଷାକପତ୍ର ଦେବ ନାହିଁ । କାରଣ ଅସୁନ୍ଦର ପୋଷାକ ପତ୍ର ପିନ୍ଧିବା ଯୋଗୁ ସାଙ୍ଗ ସାଥୀ ମେଳରେ ସେ ଉପହାସ୍ୟାସ୍ପଦ ହୁଏ, ତେବେ ତାର ପ୍ରାଣରେ ଆଘାତ ଲାଗିବ । ଭବିଷ୍ୟତରେ ସେ ସାଙ୍ଗସାଥୀ ମେଳରେ ମିଳାମିଶା କରିବାକୁ ଶଙ୍କା ବୋଧ କରିବ । ନିଜ ପ୍ରତି ତା'ର ନିକୃଷ୍ଟ ଓ ହୀନ ଧାରଣା ଜାତ ହେବ । କ୍ରମେ ଏହି ଶଙ୍କା ଓ ନିଜ ପ୍ରତି ତୁଚ୍ଛ ଧାରଣା ଯୋଗୁ ତା'ର ମନୋବୃତ୍ତିର ଅଧୋଗତି ହେବ ଏବଂ ତା'ର ଜୀବନ ବିଫଳ ହେବ । ତେଣୁ ପିଲାମାନଙ୍କୁ ସୁବେଶ ଓ ସୁସଜ୍ଜିତ କରିବ । କିନ୍ତୁ ସେମାନେ ଯେପରି ବିଳାସ ପ୍ରିୟ ନ ହୁଅନ୍ତି, ସେଥିପ୍ରତି ସତର୍କ ଥିବ ।

ଅନେକ ସମୟରେ ଶଙ୍କା ଜନିତ ନୀରବତା ଓ ଗାମ୍ଭୀର୍ଯ୍ୟ ମଧ୍ୟରେ ଥିବା ପାର୍ଥକ୍ୟ ଲୋକେ ବୁଝି ପାରନ୍ତି ନାହିଁ । ଗମ୍ଭୀର ଓ ଧୀର ସ୍ଥିର ଲୋକର ମନ ସୁସ୍ଥ ଓ ସବଳ । ସେ ନିଜର ଶକ୍ତି ଓ ସେ ଶକ୍ତିର ସଦ୍ ବ୍ୟବହାର କରିବାକୁ ଜାଣିଥାଏ । କିନ୍ତୁ ଶଙ୍କା

ଗ୍ରସ୍ତ ଲୋକର ମନ ଦୁର୍ବଳ ଓ ବ୍ୟାଧି ଗ୍ରସ୍ତ । ସେ ଅନ୍ତର୍ଶକ୍ତିର କଳନା କରି ପାରେ ନାହିଁ । ଅଜ ମଧ୍ୟ ନିଜ କ୍ଷମତାର ସଦ୍‌ବ୍ୟବହାର କରିବାକୁ ତାର ଇଚ୍ଛା-ଶକ୍ତି ଓ ପ୍ରେରଣା ନ ଥାଏ ।

ଗାମ୍ଭୀର୍ଯ୍ୟ ଗୋଟିଏ ଶକ୍ତି । ଶଙ୍କା ଗୋଟିଏ ଦୁର୍ବଳତା । ସଫଳତାର ରାଜମୁକୁଟ କେବଳ ଶକ୍ତିଶାଳୀର ମସ୍ତକ ମଣ୍ଡନ କରେ । ତେଣୁ ଶଙ୍କା ଦୂରକରି ଶକ୍ତି ସଞ୍ଚୟ କରିବା ସର୍ବଥା ବିଧେୟ ।

( ଦୁଇ )

# ଅତ୍ୟଧିକ ଆତ୍ମ-ପ୍ରତ୍ୟୟ

**Vice and Virtue have a Common Origin.**

ସମ୍ପୂର୍ଣ୍ଣ ବିପରୀତ ଗୁଣ ବିଶିଷ୍ଟ ଦୁଇଟି ଚରମ ଭାବର ଉତ୍ପତ୍ତି ସ୍ଥଳ ଏକ ହୋଇପାରେ । ଉଦାହରଣ ସ୍ୱରୂପ କୌଣସି ଲୋକପ୍ରତି ଭୟ ପ୍ରଦର୍ଶନ କଲେ, ସେ ହୁଏତ ଭୀତତ୍ରସ୍ତ ହୋଇ ଶରଣାପନ୍ନ ହେବ, କିମ୍ବା କ୍ରୋଧରେ ଜଳି ଉଠି ଉପଯୁକ୍ତ ଶାସ୍ତି ଦେବାକୁ ଆକ୍ରମଣ କରିବ ।

ଶଙ୍କାନ୍ୱିତ ଲୋକର ବ୍ୟବହାର ଠିକ୍ ଏହିପରି । ଯେଉଁ ବିଷୟରେ ସେ ତା'ର ଚିନ୍ତାଧାରାକୁ କେନ୍ଦ୍ରୀଭୂତ କରିଥାଏ, ସେ ବିଷୟରେ ତାକୁ ସାମାନ୍ୟ ବାଧା ଦେଲେ, ସେ ଉତ୍କ୍ଷିପ୍ତ ହୋଇପଡ଼େ । ମାନସିକ ଉତ୍ତେଜନାରେ ସେ ଏପରି କାର୍ଯ୍ୟ କରିପକାଏ ଯେ, ତାହା ଶ୍ରବଣ କଲେ, ସାଧାରଣ ପ୍ରକୃତିସ୍ଥ ଲୋକମାନେ ବିସ୍ମିତ ହୁଅନ୍ତି । ସାଧାରଣତଃ ଶଙ୍କାଗ୍ରସ୍ତ ଲୋକ

କାହାର ସମ୍ମୁଖରେ ପଡେ଼ହେଲେ କଥା କହିବାକୁ ସାହାସ କରେ ନାହିଁ । କିନ୍ତୁ ମନପ୍ରାଣ ଦେଇ ଲାଗିପଡ଼ିଥିବା କୌଣସି ବିଷୟରେ ବାଧା ପାଇ ଉତ୍କ୍ଷିପ୍ତ ହେଲେ, ସେ ମାନସିକ ଉତ୍ତେଜନାରେ ଗୁରୁଜନମାନଙ୍କ ସଙ୍ଗେ ସୁଦ୍ଧା ଯୁକ୍ତିତର୍କ କରି ନାନା ଅରୁଚିକର, ଅପ୍ରୀତିକର ଓ ଦୁଃସାହସିକ କାର୍ଯ୍ୟ କରିପକାଏ ।

ଏହି ଶ୍ରେଣୀର ଲୋକମାନଙ୍କ ପକ୍ଷେ ଏରୂପ ବ୍ୟବହାର ସ୍ୱାଭାବିକ । ପ୍ରକୃତରେ ଏମାନଙ୍କର ମାନସିକ ଭାରକେନ୍ଦ୍ର ଠିକ୍ ନ ଥାଏ । ପ୍ରକୃତିସ୍ଥ ସାଧାରଣ ଲୋକମାନଙ୍କ ପରି ଏମାନଙ୍କର ଭାବନା, ଚିନ୍ତାଧାରା, ମତାମତ ଓ ସିଦ୍ଧାନ୍ତ, ଯୁକ୍ତିଯୁକ୍ତ, ମାର୍ଜିତ ଓ ସଙ୍ଗତ ନୁହେଁ । ଶଙ୍କାଶୀଳ ବ୍ୟକ୍ତି ଏକଦେଶଦର୍ଶୀ । ସେ ପ୍ରତ୍ୟେକ ବିଷୟର କେବଳ ଗୋଟିଏ ଅଙ୍ଗ ବିଚାର କରେ । ଏପରି ବିଚାର ଓ ଭାବନାରେ ସେ ତା’ର ସମସ୍ତ ଚିନ୍ତା କେନ୍ଦ୍ରୀଭୂତ କରିଦିଏ । ଅଥଚ ମଧ୍ୟ ସେ ଅପଣାର ଭାବନାକୁ କାହାରି ନିକଟରେ ପ୍ରକାଶ ନ କରି ଗୋପନ ରଖେ । ଦୁର୍ବଳ ମନର ଅଙ୍କୁଶ ବିହୀନ କଳ୍ପନା ଓ ଉତ୍ତେଜନାରେ ଗୋଟିଏ ବିଷୟରେ ଅହରହ ଚିନ୍ତାକରି ସେ ତା’ର ଭାବନାକୁ ଅତିରଞ୍ଜିତ କରି ପକାଏ । କିନ୍ତୁ ସେ ନିଜେ ସୁଦ୍ଧା ତା’ର ଏ ଭାବନାର କ୍ରମ ପରିବର୍ତ୍ତନ ବୁଝିପାରେ ନାହିଁ । ତା’ର ପରିବର୍ତ୍ତିତ ଅସ୍ୱାଭାବିକ ଓ ଅସଙ୍ଗତ ଭାବନାରେ ସେ ଅଭ୍ୟସ୍ତ ହୋଇଯାଏ । ଏହା ଯୁକ୍ତି ଯୁକ୍ତ ଓ ସତ୍ୟ ବୋଲି ତା’ର ଦୃଢ଼ ଧାରଣା ହୁଏ । ତେଣୁ ତା’ର ଏରୂପ ଭାବନା ଓ ମତାମତର କେହି ପ୍ରତିବାଦ କଲେ, ତାର ଜ୍ଞାନ ଲୋପହୁଏ । ଏପରି ଅବସ୍ଥାରେ ସେ ଦୁଃସାହସିକ କାର୍ଯ୍ୟ କରିଯାଏ । ଅନ୍ୟମାନଙ୍କ ସଙ୍ଗେ ଭାବର ବିନିମୟ କରି ଅପଣାର ଧାରଣାକୁ ପରିମାର୍ଜିତ କରିବା

ତା’ ପକ୍ଷେ ସମ୍ଭବ ହୁଏନା, ସେ ସମାଲୋଚନା ଆଦୌ ସହିପାରେନା । ଅନ୍ୟମାନଙ୍କ ସଂଗେ ଭାବର ଆଦାନ ପ୍ରଦାନ ନକରି ଶଙ୍କାନ୍ୱିତ ବ୍ୟକ୍ତି ମାନସିକ ନିର୍ଜନତା (mental seclusion) ସୃଷ୍ଟିକରେ । ମାନସିକ ନିର୍ଜନତା ଚିନ୍ତାଧାରାର ଅବାଧ ଓ ସ୍ୱାଭାବିକ ପ୍ରବାହରେ ବାଧା ଦିଏ । ଚିନ୍ତାଧାରାକୁ ଜଳ ପ୍ରବାହ ସଙ୍ଗେ ତୁଳନା କରାଯାଇ ପାରେ । ଜଳ ପ୍ରବାହ ବାଧା ନ ପାଇଲେ ସ୍ୱଚ୍ଛନ୍ଦରେ ନିମ୍ନକୁ ବହିଯାଏ । କିନ୍ତୁ ତାର ଗତି ପଥରେ ବାଧା ଉପସ୍ଥିତ ହେଲେ ଜଳର ଅଗ୍ରଗତି ରୁଦ୍ଧ ହୁଏ ଏବଂ ପ୍ରବାହର ବେଗ ପ୍ରଖର ଥିଲେ ସେଠାରେ ଭୀଷଣ ଆବର୍ତ୍ତର ସୃଷ୍ଟି ହୁଏ ।

ଶଙ୍କିତ ଲୋକର ଚିନ୍ତାଧାରା ଠିକ ବାଧାପ୍ରାପ୍ତ ଜଳସ୍ରୋତ ପରି । ମାନସିକ ନିର୍ଜନତାର ବାଧା ଲଙ୍ଘନ କରି, ସେ ନିଜର ଭାବନାକୁ ଅନ୍ୟ ନିକଟରେ ପ୍ରକାଶ କରେ ନାହିଁ । ତା’ର ଚିନ୍ତାଧାରା, ତା’ର ଦୁର୍ବଳ ମନର ସଂକୀର୍ଣ୍ଣ ସୀମାଭିତରେ ଆବଦ୍ଧ ରହି, କ୍ରମେ ଏକ ଦିଗଦର୍ଶୀ ଧାରଣା ରୂପକ ଭୀଷଣ ଆବର୍ତ୍ତରେ ପରିଣତ ହୁଏ । ଗୋଟିଏ ଭାବନାରେ ଅହରହ ନିବଦ୍ଧ ରହିଲେ ଏପରି ଭାବନା ପରିବର୍ଦ୍ଧିତ, ଅତିରଞ୍ଜିତ ଓ ବିକୃତ ହୁଏ, ସେ ବିଷୟରେ ଜଣେ ଜାପାନୀ ଦାର୍ଶନିକ ନିମ୍ନଲିଖିତ ଭାବେ ତାଙ୍କ ଆତ୍ମ ଜୀବନୀରେ ଲେଖି ଯାଇଛନ୍ତି ।

“ଥରେ ମୁଁ ପୀଡ଼ିତ ଥିଲି । ସେଥିଯୋଗେ ପଢ଼ାପଢ଼ି କରିବାକୁ ମୋତେ ନିଷେଧ କରାଯାଇଥିଲା । ନିର୍ଜନ କକ୍ଷରେ ଅହରହ ଶଯ୍ୟାଶାୟୀ ଭାବେ କାଳାତିପାତ କରିବା ମୋ ପକ୍ଷେ କଷ୍ଟକର ହେଉଥିଲା । ମନ ପରିବର୍ତ୍ତନ କରିବାକୁ ଆଉ କିଛି ଉପାୟ

ନ ଥିଲା । କେବଳ ମୋର ଉପସ୍ଥିତ ପଦାର୍ଥ ଗୁଡ଼ିକୁ ମୁଁ ବାରମ୍ବାର ନିରୀକ୍ଷଣ କରୁଥିଲି । କକ୍ଷର ଦ୍ୱାରରେ ଖଣ୍ଡିଏ ପରଦା ଥିଲା । ସେଥିରେ ଫୁଲ ପତ୍ରର ସୁନ୍ଦର ଛବି ଥିଲା । ମୁଁ ବାରମ୍ବାର ସେ ଛବିକୁ ଦେଖୁଥିଲି ଓ ସେ ବିଷୟରେ ଚିନ୍ତା କରୁଥିଲି । ଧିରେ ସେ ଛବି ଦେଖୁ ଦେଖୁ ତହିଁର ଫୁଲଗୁଡ଼ିକ ହଠାତ୍ ଗୋଟିଏ ସୁନ୍ଦର ଉପବନ ରୂପେ ମୋର ଆଖି ଆଗରେ ଫୁଟି ଉଠିଲା । କ୍ରମେ ଛବିର ପତ୍ରଗୁଡ଼ିକ ଗୋଟିଏ ଶ୍ୟାମଳ ବନରେ ପରିଣତ ହୋଇ ମୋର ଦୃଷ୍ଟି ପଥାରୂଢ଼ ହେଲା । ମୁଁ କଳ୍ପନାରେ ସେ ଉପବନରେ ଗୋଟିଏ ରାଜକୁମାରୀଙ୍କୁ ଦେଖି ପାରିଲି । ଉକ୍ତ ବନ ମଧ୍ୟରେ ଅସଂଖ୍ୟ ସୈନ୍ୟ ସାମନ୍ତ ଏକତ୍ରିତ ହୋଇଥିବାର ମଧ୍ୟ ଦେଖିଲି । ସହସା ଉକ୍ତ ରାଜକୁମାରୀଙ୍କୁ ଗୋଟିଏ ଦସ୍ୟୁ ଧରି ନେଇଗଲା । ତାଙ୍କୁ ଉଦ୍ଧାର କରିବାକୁ ସୈନ୍ୟ ସାମନ୍ତମାନେ ଦସ୍ୟୁ ସଙ୍ଗେ ଯୁଦ୍ଧ ଆରମ୍ଭ କଲେ । ତା' ପରେ ଭୀଷଣ ଯୁଦ୍ଧ ଲାଗିଲା ।"

"ଏହାପରି ଭାବରେ ସେ ଛବିକୁ ଚାହିଁ କଳ୍ପନାରେ ଏ ଘଟଣା ପ୍ରତିଦିନ ଦେଖିବାକୁ ପାଇଲି । କ୍ରମେ ଏହା ସତ୍ୟ ଘଟଣା ବୋଲି ମୋର ଧାରଣା ହେଲା । ରାଜକୁମାରୀଙ୍କୁ ଉଦ୍ଧାର କରିବା ଲାଗି ଯୁଦ୍ଧ ଲାଗିଛି ବୋଲି, ମୁଁ ମୋର ମାଆଙ୍କୁ କହିଲି । ସେ ମୋର ଏପରି କଥା ଶୁଣି ଚିନ୍ତିତ ହେଲେ । ଶେଷରେ ପରଦାଟିକୁ ସ୍ଥାନାନ୍ତରିତ କରାଯିବାରୁ ମୋର ଏ ରୂପ ଚିନ୍ତା ବିକାର ଦୂର ହେଲା । ମୁଁ ପ୍ରକୃତିସ୍ଥ ହେଲି । ଆରୋଗ୍ୟ ଲାଭ କରିବା ପରେ ଉକ୍ତ ପରଦାଟିକୁ ଦେଖିବାରୁ ମୋତେ ହସ ମାଡ଼ିଲା ।"

ଶଙ୍କାଗ୍ରସ୍ତ ଲୋକର ଠିକ୍ ଏହାପରି ଘଟିଥାଏ । ସେ ତା'ର ମାନସିକ ନିରୋଳତାରେ ବନ୍ଧୁ—ଗୋଟିଏ ବିଷୟରେ ଅହରହ

ଭାବ, ତା'ର ଭାବନାକୁ ଅତିରଞ୍ଜିତ କରିପକାଏ ଓ ଏ ରୂପ ଅସାର ଭାବନାକୁ ସତ୍ୟ, ନ୍ୟାୟ ସଙ୍ଗତ ଓ ଯୁକ୍ତିଯୁକ୍ତ ବୋଲି ଭାବିନିଏ । ଏଥିରୁ ତା'ର ଉତ୍ତାପ ଅତ୍ୟଧିକ ଅତ୍ମପ୍ରତ୍ୟୟ ଜାତହୁଏ ।

ଦୁନିଆରେ ସମସ୍ତେ ନିଜର ପ୍ରତିପତ୍ତି ବିସ୍ତାର କରିବାକୁ ଉଦ୍‌ଗ୍ରୀବ । ଶଙ୍କାଶୀଳର ମଧ୍ୟ ଏରୂପ ସ୍ୱାଭାବିକ ଆକାଂକ୍ଷା ଥାଏ । କିନ୍ତୁ ନିଜର ଏ ଆକାଂକ୍ଷା ପୂରଣ କରିବାକୁ ତା'ର ମନୋବଳ ଓ ଆତ୍ମବଳ ନ ଥାଏ । ଅବିଶ୍ରାନ୍ତ ସାଧନାରେ ନିଜକୁ ଉନ୍ନତ କରି, ଲୋକସମାଜରେ ଖ୍ୟାତି ଅର୍ଜନ କରିବାକୁ ସେ ସମ୍ପୂର୍ଣ୍ଣ ଅସମର୍ଥ । ନିଜର ଏ ଇଚ୍ଛାଭିଳାଷ ପୂରଣ କରିବା ଉଦ୍ଦେଶ୍ୟରେ ସେ ଅଜାଣତରେ ଆପଣାର ଅସାର ଚିନ୍ତାଧାରାକୁ ଅତିରଞ୍ଜିତ କରି ଅନ୍ୟମାନଙ୍କ ନିକଟରେ ପ୍ରକାଶକରେ । ତା' କଥାରେ ଲୋକେ ଏକମତ ନ ହେଲେ ସେ ଉତ୍‌କ୍ଷିପ୍ତ ହୋଇ ଉଠେ । ଏପରି କି କଳହ ଓ ବିବାଦ ସୃଷ୍ଟି କରେ ।

ଗୋଟିଏ ଅମୁହାଁ ଜଳପୂର୍ଣ୍ଣ ପାତ୍ର ନିଆଁରେ ବସାଇଲେ ତନ୍‌ମଧ୍ୟସ୍ଥ ଜଳ ପ୍ରଥମେ ଉତ୍ତପ୍ତ ହୁଏ । ତତ୍‌ପରେ ଅତ୍ୟଧିକ ଉତ୍ତାପ ପାଇଲେ ବାଷ୍ପରେ ପରିଣତ ହୋଇ ଜଳପାତ୍ରଟିକୁ ବିଦୀର୍ଣ୍ଣ କରିଦିଏ । ସେହିପରି ଶଙ୍କିତ ଲୋକର ଆକାଂକ୍ଷା ପାତ୍ର ମଧ୍ୟସ୍ଥ ଜଳ ପରି, ତାର ମନରେ ଗୋପନ ରହି କମେ କମେ ଉତ୍ତେଜିତ ହେଉଥାଏ । ଅବଶେଷରେ ସାମାନ୍ୟ ଉଦ୍ଦୀପନାରେ ମାନସିକ ଆବେଗସହ ପଦାକୁ ଫୁଟିପଡ଼େ ।

ଶଙ୍କାନ୍ୱିତ ଲୋକ ମିଥ୍ୟା କହିବାକୁ କୁଣ୍ଠିତ ହୁଏନା । କିନ୍ତୁ ମିଥ୍ୟାର ଅବତାରଣାରେ ତା'ର ଶ୍ରୋତାମାନଙ୍କ ମୁହଁରେ

ସନ୍ଦେହର କ୍ଷୀଣ ଆଭାସ ପାଇଲେ ସେ ଭୀଷଣ ଘଟିଯାଏ । ନିଜର ଭିତ୍ତିହୀନ ଅସମ୍ଭବ କଥାକୁ ସତ୍ୟରୂପେ ଗ୍ରହଣ କରିବାକୁ ସେ ନାନାପ୍ରକାର ଅସାର ଯୁକ୍ତି କରେ । ଏଥିରେ ନିଜର ମତ ସାବ୍ୟସ୍ତ କରି ନ ପାରିଲେ କ୍ରୋଧରେ କଳହ କରେ ।

ସମୟ ସମୟରେ ସେ ସ୍ୱୀୟ ମତର ଅସାରତ୍ୱ ହୃଦୟଙ୍ଗମ କରେ । କିନ୍ତୁ ନିଜେ ଅପ୍ରକୃତିସ୍ଥ ଲୋକ ଥିବାରୁ ସମ୍ମାନର ସହିତ ନିଜର ଭ୍ରାନ୍ତି ଓ ଦୁର୍ବଳତା ସ୍ୱୀକାର କରିପାରେ ନାହିଁ । ପରନ୍ତୁ ଅଳ୍ପ ସମ୍ମାନ ହାନି ଭୟରେ ସ୍ୱୀୟ ଭ୍ରାନ୍ତ ମତର ଉପାଦେୟତା ବୁଝାଇବାକୁ ଚେଷ୍ଟା କରେ ।

ଶଙ୍କାଯୁକ୍ତ ଲୋକ ନିଜର ଦୁଇଟା ସ୍ୱରୂପ ଅନୁଭବ କରେ । ତାକୁ ଲାଗେ ସତେ ଯେପରି ତାର ଦୁଇଟା ମନ । ପ୍ରକୃତରେ ତା'ର ଦୁଇଟା ସ୍ୱରୂପ । ଗୋଟିଏ ତା'ର ନିଜର ରୂପ । କିନ୍ତୁ ତାର ଏ ରୂପକୁ କେହି ଦେଖନ୍ତି ନାହିଁ । ଏହା ତାହାର ପ୍ରକୃତ ଅନ୍ତରର ରୂପ । ଅନ୍ୟଟି ତା'ର ଛଦ୍ମରୂପ । ଏହି ଛଦ୍ମରୂପରେ ସେ ଦୁନିଆରେ ପରିଚିତ । ତା'ର ଭିତରର—ରୂପଟି ସ୍ୱାଭାବିକ ଓ ଦୋଷଶୂନ୍ୟ । ସେ ରୂପରେ ସେ ନିଜର ମୂଲ୍ୟ ଜାଣିଥାଏ । କିନ୍ତୁ ଛଦ୍ମ ରୂପଟିରେ ଶଙ୍କା, ଦୁର୍ବଳତା, ଅସ୍ୱାଭିମାନ ପ୍ରଭୃତି ଦୋଷ ପୂର୍ଣ୍ଣ ଥାଏ । ଏପରି ଲୋକ ବେଳେବେଳେ ତା'ର ଅନ୍ତରର ଅନ୍ତରତମ ପ୍ରଦେଶରେ ଅନୁଭବ କରେ ତା'ର ମୂଲ୍ୟ କେତେ ଓ ତା'ର ଦୋଷ ଦୁର୍ବଳତା କେଉଁଠି । କିନ୍ତୁ ବାହାରର ଛଦ୍ମ ରୂପକୁ ବିତାଡ଼ିତ କରି ନିଜ ଅନ୍ତରର ପ୍ରକୃତ ସ୍ୱରୂପ ପ୍ରକାଶ କରିବାରେ ସେ ସମର୍ଥ ହୁଏନାହିଁ । କାରଣ ଏରୂପ କରିବାକୁ ଯେ ମନୋବଳର ଆବଶ୍ୟକ, ଶଙ୍କା ତାକୁ ବିନଷ୍ଟ କରିଦେଇଥାଏ ।

ଅତି ସାମାନ୍ୟ କଥାକୁ ଶଙ୍କାନ୍ୱିତ ଲୋକ ଅତି ଗୁରୁତର ଭାବେ ଗ୍ରହଣ କରେ । ନିହାତି ଛୋଟ ଘଟଣାଟି ବି ତା'ର ଚିନ୍ତାର ସାମଗ୍ରୀ ହୋଇପଡ଼େ । ଏ ରୂପ କ୍ଷୁଦ୍ର କ୍ଷୁଦ୍ର ଘଟଣାକୁ ନିଜର କଳ୍ପନାରେ ଅତିରଞ୍ଜନ କରି ସେ ବଡ଼ ଆକାରରେ ଦେଖେ । ତେଣୁ ସାମାନ୍ୟ ସୁଖର କଥାରେ ସେ ଆନନ୍ଦରେ ଅଧୀର ଓ ଅସ୍ଥିର ହୋଇପଡ଼େ । ସେହିପରି ମଧ୍ୟ ସାମାନ୍ୟ ଦୁଃଖରେ ସେ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରେ ।

ମୋଟ ଉପରେ ଶଙ୍କାଶୀଳ ଲୋକଙ୍କର ଜୀବନରୁ ସୁଖ ଶାନ୍ତି ଦୂର ହୋଇଯାଏ । ସେମାନେ ଜୀବନକୁ ଜୀବନ୍ତ ଓ ଉତ୍ସବମୟ କରି ଉପଭୋଗ କରିପାରନ୍ତି ନାହିଁ । ବିପଦରେ ଅଧୀର ଓ ସମ୍ପଦରେ ଅହଙ୍କାରୀ ନ ହୋଇ କିପରି ଜୀବନକୁ ସୁଖମୟ କରିବାକୁ ହେବ, ଏହାର କୌଶଳ ସେମାନଙ୍କୁ ଜଣା ନ ଥାଏ ।

( ତନ )

# ଶଙ୍କା ସ୍ୱାସ୍ଥ୍ୟର ଶତ୍ରୁ

Sound mind in a Sound body.

ମନସଙ୍ଗେ ଶରୀରର ଘନିଷ୍ଠ ସମ୍ବନ୍ଧ ରହିଛି । ତେଣୁ ଶାରୀରିକ ସ୍ୱାସ୍ଥ୍ୟ ଉପରେ ମନର ପ୍ରଭାବ ଅସୀମ । ମନରେ ଶଙ୍କା ପ୍ରବେଶ କଲେ, ମାନସିକ ଭାବ—ଚୈତନ୍ୟ, ନଷ୍ଟ ହୋଇଯାଏ । ମନର ଏ ରୂପ ବିକୃତିର ପ୍ରଭାବ ଶାରୀରିକ ସ୍ୱାସ୍ଥ୍ୟ ଉପରେ ପ୍ରତିଫଳିତ ହୁଏ । ତେଣୁ ଏ ଶ୍ରେଣୀର ଲୋକମାନଙ୍କର ସ୍ୱାସ୍ଥ୍ୟହାନି ହୁଏ ।

ଶଙ୍କା ଯୋଗୁ ମନରେ ଅତ୍ୟଧିକ ଉଦ୍ବେଗ ଜାତ ହୁଏ । ସାମାନ୍ୟ କଥାରେ ମନର ଆବେଗ ଓ ଉତ୍ତେଜନା ପ୍ରବଳ ହୋଇ ଉଠେ । ଏହି କାରଣରୁ ଶଙ୍କାଶୀଳ ଲୋକମାନେ ଉନ୍ମାଦ, ଅପସ୍ମାର, ମୂର୍ଚ୍ଛା ସନ୍ନ୍ୟାସ, ଶିରଃ ପୀଡ଼ା, ସ୍ନାୟୁଦୌର୍ବଲ୍ୟ, ମତିଭ୍ରଂଶ ପ୍ରଭୃତି ମସ୍ତିଷ୍କ ବିକାର ଜନିତ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ସାମାନ୍ୟ

ଅନନ୍ଦରେ ଯେପରି ସେମାନଙ୍କ ମନର ଉତ୍ତେଜନା ବୃଦ୍ଧି ହୁଏ, ସେହିପରି ସାମାନ୍ୟ ଦୁଃଖରେ ହତାଶା, ଅବଶତା ଓ ଅବସନ୍ନତା ପ୍ରାଣକୁ ଘାରିଧରେ ।

ମାନସିକ ଉତ୍ତେଜନା ଯୋଗୁ ସେମାନେ ନାନାପ୍ରକାର ହୃଦ୍‌ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ସମସ୍ତ ସମୟରେ ହୃତ୍‌ପିଣ୍ଡର କ୍ରିୟା ବନ୍ଦ ହୋଇଯାଇ, ସେମାନଙ୍କର ମୃତ୍ୟୁ ହୁଏ । ଶଙ୍କା, ଭୟ, ମାନସିକ ଉତ୍ତେଜନା ପ୍ରଭୃତି ଅତିରକ୍ତଚାପ (High blood pressure) ରୋଗର କାରଣ ।

ଏହାଛଡ଼ା ଶଙ୍କା ଓ ଭୟ ଯୋଗେ ସେମାନେ ପରିଷ୍କାର ଭାବେ ଶବ୍ଦ ଉଚ୍ଚାରଣ କରି ପାରନ୍ତି ନାହିଁ । ସଭା ସମିତିରେ ସେମାନଙ୍କର କଣ୍ଠ ରୋଧ ହୁଏ । ଏଥିଲାଗି ସେମାନେ ହାସ୍ୟାସ୍ପଦ ହୁଅନ୍ତି ଓ ଏହି କାରଣରୁ ସେମାନଙ୍କର ଆବେଗ ଓ ଉତ୍ତେଜନା ଅତ୍ୟଧିକ ବୃଦ୍ଧି ହୁଏ । ଏହାର ପ୍ରଭାବ ଶରୀର ଉପରେ ପଡ଼ି ସ୍ୱାସ୍ଥ୍ୟହାନି ଘଟାଏ । ଏହି ଶ୍ରେଣୀର ଲୋକେ ନାନାପ୍ରକାର ଉଦରାମୟ ରୋଗ ଭୋଗ କରିଥାନ୍ତି ।

ଏପରି ଲୋକମାନଙ୍କର ଅନ୍ୟକାରଣରୁ କୌଣସି ରୋଗ ହେଲେ, ତାହା ସହଜରେ ଆରୋଗ୍ୟ ହୁଏ ନାହିଁ । କାରଣ ଏମାନେ ଅବ୍ୟବସ୍ଥିତ ଚିତ୍ତ ଓ ଚପଳ ପ୍ରକୃତିର ଲୋକ ହୋଇଥିବାରୁ ଚିକିତ୍ସକଙ୍କର ଉପଦେଶ ମତେ ଚିକିତ୍ସା ପାଳନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଔଷଧରେ ବା ଚିକିତ୍ସକଙ୍କ ଉପରେ ଏମାନଙ୍କର ପୂର୍ଣ୍ଣ ବିଶ୍ୱାସ ନଥାଏ । ପୁଣି ଶଙ୍କା ଓ ସରମ ଯୋଗୁଁ ରୋଗର ଲକ୍ଷଣ ଗୁଡ଼ିକ ମୁହଁ ଖୋଲି ଚିକିତ୍ସକଙ୍କ ନିକଟରେ ପ୍ରକାଶ କରି

ପାରନ୍ତି ନାହିଁ । ଜନନେନ୍ଦ୍ରିୟଗତ କୌଣସି ରୋଗ ହେଲେ ଏମାନେ ସେ ବିଷୟ ଶଙ୍କା, ସରମ ଓ ସଂକୋଚରେ ଗୋପନ ରଖନ୍ତି । ଅବଶେଷରେ ସେ ବ୍ୟାଧିର ଯନ୍ତ୍ରଣାରେ ବରଂ ମୃତ୍ୟୁ ବରଣ କରନ୍ତି, କିନ୍ତୁ ଚିକିତ୍ସକ କିମ୍ବା ଅନ୍ୟ କୌଣସି ଲୋକ ନିକଟରେ ସେ ବିଷୟ ପ୍ରକାଶ କରିବାକୁ ସାହସ କରନ୍ତି ନାହିଁ ।

ଅନେକ ସମୟରେ ଦେଖାଯାଇଥାଏ, କେତେକ କ୍ଷୋଭ୍ୟ ଥିବା ବାଳିକା ଋତୁସ୍ରାବ ଓ ଋତୁଚର୍ଯ୍ୟା ପ୍ରଭୃତି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଋତୁ ସମୟରେ କିପରି ଚଳିବାକୁ ହେବ, କିପରି ପରିଷ୍କାର ପରିଚ୍ଛନ୍ନ ରହିବାକୁ ହେବ ଏହିପରି ସରଳ ଓ ପ୍ରାଥମିକ ସ୍ୱାସ୍ଥ୍ୟବିଧାନ ନିୟମ ସ୍ମୃତିକ ସେମାନଙ୍କୁ ଜଣା ନ ଥାଏ । ଏପରି ଅତ୍ୟାବଶ୍ୟକୀୟ ବିଷୟରେ ଅନଭିଜ୍ଞତା ହୁଏ ତ ସେମାନଙ୍କର ନିଜର ଶଙ୍କା କିମ୍ବା ପିତାମାତାଙ୍କର ଅଜ୍ଞତା ବା ସଂକୋଚରୁ ଘଟିଥାଏ । ଲଜ୍ଜା ଓ ସଂକୋଚ ଯୋଗୁଁ ଜନନୀ ନିଜର କନ୍ୟାକୁ ଏ ବିଷୟରେ କିଛି ଶିକ୍ଷା ଦେଇ ପାରନ୍ତି ନାହିଁ । ଏହାଦ୍ୱାରା କୋମଳମତି ବାଳିକା ମାନଙ୍କର ନାନା ପ୍ରକାର ରୋଗ ଜାତ ହୁଏ ଓ ଭବିଷ୍ୟତରେ ସେମାନଙ୍କର ସନ୍ତାନ ସନ୍ତତି ଲାଭରେ ବ୍ୟାଘାତ ଜନ୍ମେ ।

ଶଙ୍କା ଓ ଭୟ ଯୋଗୁଁ ଗର୍ଭବତୀ ନାରୀ ମାନଙ୍କର ଅନେକ ସମୟରେ ଗର୍ଭସ୍ରାବ ହୋଇଥାଏ । ଋତୁ ସ୍ରାବ ବେଳେ ଶଙ୍କା ଯୋଗେ ଅତ୍ୟଧିକ ଭୟଜାତ ହେଲେ ଅନେକ ସମୟରେ ଉତ୍କୁଣ୍ଠିଳ ରୋଗ ଜାତହୁଏ ।

କେତେକ ଶଙ୍କାକୁଳ ଲୋକ ଅନ୍ୟମାନଙ୍କ ଉପସ୍ଥିତିରେ କିଛି ଲେଖିପାରନ୍ତି ନାହିଁ । ଶଙ୍କା ଓ ଭୟଯୋଗେ ସେମାନଙ୍କର

ଅଙ୍ଗୁଳି ଓ ହସ୍ତର ମାଂସପେଶୀଗୁଡ଼ିକର ଅସ୍ୱାଭାବିକ ସଙ୍କୋଚନ ଓ ପ୍ରସାରଣ ହୁଏ । ତେଣୁ ସେମାନେ କଲମ ଧରିବାକୁ ଅସମର୍ଥ ହୁଅନ୍ତି । କିନ୍ତୁ ଏକୁଟିଆ ଥିଲେ, ସେମାନଙ୍କର ଏ ଦୁର୍ବଳତା ପ୍ରକାଶ ପାଏନାହିଁ । କେତେକ ଲୋକ ଶଙ୍କାବଶତଃ ଅନ୍ୟ କୌଣସି ଲୋକର ଉପସ୍ଥିତିରେ ଭୋଜନ କରିପାରନ୍ତି ନାହିଁ । ସେମାନଙ୍କର ଧାରଣା ହୁଏ ଯେ ଭୋଜନବେଳେ ସେମାନଙ୍କର ଅଙ୍ଗଭଙ୍ଗୀ ସୁନ୍ଦର ଓ ରୁଚିକର ନୁହେଁ, ଏପରି ବିକୃତ ଅଙ୍ଗଭଙ୍ଗୀ ଦେଖି ଲୋକେ ସେମାନଙ୍କୁ କୁତ୍ସିତ ଓ ଅସୁନ୍ଦର ଭାବିବେ । ଏହି ଆଶଙ୍କାରେ ଅନ୍ୟଲୋକମାନଙ୍କ ଉପସ୍ଥିତିରେ ପାନଭୋଜନ କରିବାକୁ ସେମାନେ ଅସମର୍ଥ ହୁଅନ୍ତି ।

ଶଙ୍କା କେବଳ ମାନସିକ ସୁଖଶାନ୍ତି ବିନଷ୍ଟ କରେନାହିଁ । ଏହା ମଧ୍ୟ ନାନାବେଗ ସୃଷ୍ଟିକରି ଶାରୀରିକ ସ୍ୱାସ୍ଥ୍ୟ ଓ ସୁଖ ବିନଷ୍ଟ କରେ । ଏହି ଉଭୟବିଧ କାରଣରୁ ଶଙ୍କାନ୍ୱିତର ଜୀବନ ବିଷମୟ ଓ ଦୁର୍ବହ ହୋଇପଡ଼େ ।

( ଗୃହ )

## ସ୍ତ୍ରୀ ଓ ପାରିବାରିକ ଜୀବନ

"Home home sweet home
There is nothing like home."

ଜଣେ ଇଂରେଜ କବି ଉନ୍ମସ୍ଥ ହୋଇ ଗୃହ ସମ୍ବନ୍ଧରେ ଏପରି ଗାଇଯାଇଛନ୍ତି । ହିନ୍ଦୁ ଯୋଗୀ, ଋଷି ଓ ମନୀଷୀମାନେ ଗାର୍ହସ୍ଥ୍ୟାଶ୍ରମର ସର୍ବତୋଭାବରେ ପ୍ରଶଂସା କରି ତାକୁ ଶ୍ରେଷ୍ଠ ସ୍ଥାନ ଦାନ କରିଛନ୍ତି । ବାସ୍ତବିକ୍ ଦେଖିବାକୁ ଗଲେ ଗୃହରେ ଯେ ସୁଖ ଶାନ୍ତି ମିଳେ, ଅନ୍ୟ କୌଣସିଠାରେ ତାହା ସମ୍ଭବପର ହୁଏ ନାହିଁ । ଧନୀ କୁହ, ଦରିଦ୍ର କୁହ, ରଜା କୁହ, ପ୍ରଜା କୁହ,—ପ୍ରାସାଦ-ବାସୀଠାରୁ ପର୍ଣ୍ଣକୁଟୀରବାସୀ ପର୍ଯ୍ୟନ୍ତ ସମସ୍ତଙ୍କୁ ଭଗବାନ୍ ଏ ପାରିବାରିକ ସୁଖ ଦାନ କରିଛନ୍ତି । ଏହା ସଂସାର ସାହାରାରେ ମରୁଦ୍ୱୀପ ସ୍ୱରୂପ ।

ସାରାଦିନ ଅକ୍ଳାନ୍ତ ପରିଶ୍ରମ କରି ଯେତେବେଳେ ଗୃହସ୍ଥ ନିଜର କୁଟୀରରେ ପ୍ରବେଶ କରେ ସେତେବେଳେ ତାର ସବୁ ଦୁଃଖ, ସବୁ କ୍ଳାନ୍ତି ଉଭେଇଯାଏ । ଆତ୍ମୀୟ ସ୍ୱଜନଙ୍କ ଗହଣରେ ବସି, ଗୃହିଣୀର ସଙ୍କୁଳ ମିଷ୍ଟାଳାପରେ, ସ୍ନେହ ସୋହାଗ ଭୋଳା ଆଦର ଯତ୍ନରେ,—ସନ୍ତାନ ସନ୍ତତିଙ୍କର ଅର୍ଦ୍ଧୋଚ୍ଚାରିତ ଅସ୍ପଷ୍ଟ ମଧୁର କଥାରେ, ଜନନୀର ଶୁଶ୍ରୂଷା ଓ ସ୍ନେହାତିଶଯ୍ୟରେ ସେ ଅସ୍ଥ ବାହ୍ୟେର ହୋଇ ସ୍ୱର୍ଗ ସୁଖ ଭୋଗକରେ ।

କିନ୍ତୁ ଶଙ୍କାଗ୍ରସ୍ତ ଲୋକର ଭାଗ୍ୟରେ—ଏ ସ୍ୱର୍ଗ ସୁଖ ସମ୍ଭବେ ନାହିଁ । ନିଜର ଶଙ୍କା ଯୋଗେ ତାର ପାରିବାରିକ ଜୀବନ ବିଷମୟ ଓ ଅସହନୀୟ ହୋଇପଡ଼େ । ବାହାରେ ନିଜର ଦୋଷ ଦୁର୍ବଳତା ଲାଗି ଅପମାନିତ ଓ ଉପହାସିତ ହୋଇ, କ୍ଷତ ବିକ୍ଷତ ପ୍ରାଣରେ ଓ ଉତ୍ତେଜିତ ମନରେ ଫେରିଲା ପରେ ସେ ଆସି ଗୃହରେ ପ୍ରବେଶ କରେ । ସେତେବେଳେ କ୍ଷୋଭ, ଅପମାନ ଓ କ୍ରୋଧରେ ତା'ର ଅନ୍ତର ଜଳୁଥାଏ । ବାହାରେ ଅନ୍ୟମାନଙ୍କ ସମ୍ମୁଖରେ ଅନଳ ଉଦ୍‌ଗୀରଣ କରିବାକୁ ତା'ର ସାହସ ନ ଥାଏ । କିନ୍ତୁ ଗୃହକୁ ବାହୁଡ଼ି ଆସି ଅନ୍ତରର ଉତ୍କ୍ଷିପ୍ତ କ୍ରୋଧାନଳ ଉଦ୍‌ଗୀରଣ କରି ପରିବାରର ସମସ୍ତଙ୍କୁ ଜାଳି ପୋଡ଼ି ଦିଏ । ଏହା ସଙ୍ଗେ ତା'ର ନିଜର ପାରିବାରିକ ସୁଖ ଜଳି ପୋଡ଼ି ଧ୍ୱଂସ ହୋଇଯାଏ ।

ଏ ଶ୍ରେଣୀର ଲୋକ ବାହାରେ ଅନ୍ୟମାନଙ୍କ ନିକଟରେ ନିଜର ମନୋଭାବ ପ୍ରକାଶ କରିବାକୁ ଶଙ୍କା ଓ ଭୟ ଅନୁଭବ କରନ୍ତି । କିନ୍ତୁ ଘରେ, ଯେଉଁମାନଙ୍କ ନିକଟରେ ସର୍ବଦା ଚଳ ପ୍ରଚଳ ହୁଅନ୍ତି, ସେମାନଙ୍କ ନିକଟରେ ସେପରି ଶଙ୍କା ଅନୁଭବ

କରନ୍ତି ନାହିଁ । ତେଣୁ ତାହାରେ ଉପହସିତ ହୋଇ, ବ୍ୟଗ୍ରାନ୍ୱିତ ଭାବେ, ଘରକୁ ଫେରି ଆସି ପରିବାରର ସମସ୍ତଙ୍କ ଉପରେ ଅଗ୍ନିବର୍ଷଣ କରନ୍ତି । ବିଶେଷତଃ ଏପରି ଲୋକର ମନ ସର୍ବଦା ଅପ୍ରକୃତସ୍ଥ ଥିବାରୁ ସେ ନିଜକୁ ସଂଯତ କରି ପାରନ୍ତି ନାହିଁ । ବିନା କାରଣରେ ପରିବାରର ସମସ୍ତଙ୍କ ସଙ୍ଗେ କଳହ କରନ୍ତି । ଏହାଦ୍ୱାରା ନିଜର ଓ ପରିବାରର ସୁଖ ଶାନ୍ତି ବିନଷ୍ଟ ହୁଏ ।

ଏହି ଶ୍ରେଣୀର ଅଳ୍ପ କେତେକ ଲୋକ ବାହାରେ ଉପହସିତ ହୋଇ କ୍ଷତବିକ୍ଷତ ମନରେ ଘରକୁ ଫେରି ଆସନ୍ତି । କିନ୍ତୁ ଆପଣା ଘରେ ଆତ୍ମୀୟ ସ୍ୱଜନ ମାନଙ୍କ ନିକଟରେ ନିଜ ବୁଦ୍ଧି, ବିବେଚନା ଓ ମତାମତର ସାରବତ୍ତା ପ୍ରତିପାଦନ କରି ବାହାରେ ପାଇଥିବା ଆଘାତ ଓ ଅପମାନକୁ ଘୋଡ଼ାଇ ପକାଇ ଉତ୍‌ଫୁଲ୍ଲ ହେବାକୁ ଚେଷ୍ଟା କରନ୍ତି । ସେମାନେ ଅନ୍ୟ ନିକଟରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ପାରନ୍ତି ନାହିଁ କିମ୍ବା ସେପରି କରିବା ନିମନ୍ତେ ଚେଷ୍ଟା କରିବାକୁ ସାହସ କରନ୍ତି ନାହିଁ । ମାନସିକ ନିର୍ବଳତାରେ ସେମାନେ ଆପଣାର ଗୁଣକୁ ଏକଦେଶଦର୍ଶୀ ଭାବେ ଅତିରଞ୍ଜିତ କରି ଦେଖନ୍ତି ଏବଂ ଆତ୍ମ-ପ୍ରସାଦ ଲାଭ କରିବାକୁ ପରିବାରର ଲୋକଙ୍କ ନିକଟରେ ସ୍ୱୀୟ ଧାରଣା ଓ ମତାମତ ପ୍ରକାଶ କରନ୍ତି । ସେମାନଙ୍କଠାରୁ ପ୍ରତିବାଦର ଆଶଙ୍କା ନ ଥାଏ । କିନ୍ତୁ ତାଙ୍କର ଏତାଦୃଶ ଅପଥ୍ୟ ଚାଟୁବାଣୀ ଆତ୍ମୀୟ ସ୍ୱଜନମାନଙ୍କ ମଧ୍ୟରୁ କାହାର ମୁଖରେ ସନ୍ଦେହର କ୍ଷୀଣ ଆଭାସ ଦେଖା ଦେଲେ, ସେ କ୍ରୋଧରେ ଅଗ୍ନିଶର୍ମା ହୋଇ ଉଠନ୍ତି । ଏହାଦ୍ୱାରା ପାରିବାରିକ ସୁଖ ଶାନ୍ତି ବିନାଶ କରି ନିଜେ ମନସ୍ତାପ ଭୋଗ କରନ୍ତି ।

କେତେକ ଶଙ୍କାକୁଳ ଲୋକ ଜାଣିଶୁଣି ଗୃହ ମଧ୍ୟରେ ତର୍ଜନ ଗର୍ଜନ କରନ୍ତି । ସେମାନଙ୍କର ଧାରଣା ଯେ ଏପରି ବ୍ୟବହାର ନିଜର

ସାହସିକତା ଓ ଶ୍ରେଷ୍ଠତ୍ୱର ପରିଚାୟକ । କିନ୍ତୁ ଏହାଦ୍ୱାରା ସେମାନଙ୍କର ଗାର୍ହସ୍ଥ୍ୟ ସୁଖ ନଷ୍ଟ ହୁଏ । ଗୃହ ମଧ୍ୟରେ ଏପରି ତର୍ଜନ, ଗର୍ଜନ ଚାଲେ, ଅଥଚ ବାହାରକୁ ଗଲେ, ଶଙ୍କା ଓ ଭୟରେ ସେମାନଙ୍କ ମୁଖରୁ ବାକ୍ୟ ସ୍ଫୁରେନାହିଁ ।

କେତେକ ଶଙ୍କାଯୁକ୍ତ ଲୋକ ଆପଣା ପରିବାରର ଲୋକମାନଙ୍କ ସଙ୍ଗେ ମିଳାମିଶା କରିବାକୁ ମଧ୍ୟ ଶଙ୍କାବୋଧ କରନ୍ତି । ତେଣୁ ଏମାନେ ଆତ୍ମୀୟ ସ୍ୱଜନଙ୍କ ସଙ୍ଗ ମେଳରୁ ଦୂରରେ ରହିବାକୁ ଭଲପାଆନ୍ତି । ଅବଶ୍ୟ ଗୃହ ତ୍ୟାଗ କରି ଚାଲିଯାଆନ୍ତି ନାହିଁ । କିନ୍ତୁ ଖୋଲା ପ୍ରାଣରେ ଆତ୍ମୀୟମାନଙ୍କ ସଙ୍ଗେ ମିଳାମିଶା କରନ୍ତି ନାହିଁ ।

ଅଧିକାଂଶ ଶଙ୍କାନ୍ୱିତ ଲୋକ ନିଜର ଆତ୍ମୀୟମାନଙ୍କୁ ସ୍ନେହ କରନ୍ତି; କିନ୍ତୁ ବାହାରେ ଏ ସ୍ନେହ ପ୍ରକାଶ କରିପାରନ୍ତି ନାହିଁ । ନିଜର ନିକଟତମ ଓ ପ୍ରିୟତମ ଆତ୍ମୀୟମାନଙ୍କ ପାଇଁ ଏମାନଙ୍କର ଅନ୍ତର ସ୍ନେହରେ ପୂର୍ଣ୍ଣଥାଏ, ଅଥଚ ନିଜର ବାହ୍ୟିକ ଭାବ ଭଙ୍ଗୀରେ, କଥାବାର୍ତ୍ତାରେ, ଅଦର ଯତ୍ନରେ ଏମାନେ ସେ ସ୍ନେହ ପ୍ରଦର୍ଶନ କରିପାରନ୍ତି ନାହିଁ । ତେଣୁ ବାହାରେ ଏମାନଙ୍କ ବ୍ୟବହାରରେ ଉଦାସୀନତା ଓ ଉପେକ୍ଷା ଭାବ ପରିଲକ୍ଷିତ ହୁଏ । ବାହାରେ ହୃଦୟର ଭାବ ପ୍ରକାଶ ନ କଲେ, ମନୁଷ୍ୟର ଅନ୍ତର ବୁଝିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । ସାଧାରଣତଃ ଲୋକର ବ୍ୟବହାର, କଥାଭାଷା ଓ ଭାବଭଙ୍ଗୀରୁ ତା'ର ଅନ୍ତରର ଭାବ ବୁଝାଯାଏ । ତେଣୁ ବାହାରେ ଶଙ୍କିତ ଲୋକର ଏତାଦୃଶ ଉଦାସ ଓ ଶୀତଳଭାବ ଦେଖି ପରିବାରର ନିକଟତମ ଆତ୍ମୀୟମାନଙ୍କ ପ୍ରାଣରେ ଆଘାତ ଲାଗେ । ସେମାନେ ହତାଶ ଓ ମର୍ମାହତ ହୋଇପଡ଼ନ୍ତି ।

ଧ୍ୱନି କଲେ ତା'ର ପ୍ରତିଧ୍ୱନି ଶୁଣିବାକୁ ମିଳେ । ସେହିପରି ସ୍ନେହ ପ୍ରଦର୍ଶନ କଲେ, ପ୍ରତିଦାନରେ ସ୍ନେହ ସୋହାଗ ମିଳିଥାଏ । ନିଜେ ସ୍ନେହ ନ ଦେଖାଇଲେ ପ୍ରତିବଦଳରେ ସ୍ନେହ ମିଳିବ କୁଆଡ଼ୁ ? ଶଙ୍କାଶୀଳ ଲୋକ ନିଜ ଅନ୍ତରର ସ୍ନେହ ଅନ୍ୟକୁ ଜଣାଇପାରେ ନାହିଁ । ତା'ର ବ୍ୟବହାର ଓ ଭାବଭଙ୍ଗୀରୁ କେବଳ ଉପେକ୍ଷା ଓ ଉଦାସୀନତା ଫୁଟିଉଠେ । ତେଣୁ ସେ ପ୍ରତିବଦଳରେ କେବଳ ଉଦାସୀନତା ପାଇଥାଏ । ତାର ଅନ୍ତରତମ ଆତ୍ମୀୟ ସ୍ୱଜନମାନେ ତା'ର ଉଦାସ ବ୍ୟବହାରରେ ମର୍ମାହତ ହୋଇ କ୍ରମେ ତା'ପ୍ରତି ଉଦାସୀନତା ଦେଖାଇଥାନ୍ତି । ଏହିରୂପେ ଶଙ୍କାଯୁକ୍ତ ଲୋକର ପବିତ୍ର ପାରିବାରିକ ବନ୍ଧନ ଶୀତଳ ଓ ଶିଥିଳ ହୋଇପଡ଼େ । ଏଥିରେ ତାର ନିଜର ସୁଖଶାନ୍ତି ଲୋପପାଏ । ଅଥଚ ମଧ୍ୟ ତା' ସହିତ ପରିବାରର ସୁଖଶାନ୍ତି ଲୋପହୁଏ ।

ସାହସ, ସମସ୍ୟାର ସମାଧାନ ଓ ଜଟିଳ ବିଷୟରେ ତୁରନ୍ତ ସିଦ୍ଧାନ୍ତ ଗ୍ରହଣ କରିବାର ଶକ୍ତି, ଗୋଟିଏ ଗୋଟିଏ ଉଚ୍ଚକୋଟୀର ଗୁଣ । ଏସବୁ ସୁଗୁଣ ସମ୍ପନ୍ନ ଲୋକମାନଙ୍କର ବାହ୍ୟିକ ବ୍ୟବହାରରେ କେତେକ ବିଶେଷତ୍ୱ ଥାଏ । କୋମଳମତି ପିଲାମାନେ ଏ ସବୁ ବିଶେଷତ୍ୱ ପରିଷ୍କାର ବୁଝି ନ ପାରିଲେ ସୁଦ୍ଧା, ଅସ୍ପଷ୍ଟଭାବେ ଅତିଶୀଘ୍ର ଏ ସବୁ ଲକ୍ଷଣ ହୃଦୟଙ୍ଗମ କରିପାରନ୍ତି ।

ଶଙ୍କାଗ୍ରସ୍ତ ଲୋକର ଏସବୁ ସୁଗୁଣ ନଥାଏ । ତା'ର ଦୁର୍ବଳତାକୁ ପିଲାମାନେ ଅକ୍ଲେଶରେ ବୁଝିପାରନ୍ତି ଫଳରେ ଏରୂପ ଶଙ୍କାଶୀଳ ଗୃହସ୍ୱାମୀ ଓ ଅଭିଭାବକଙ୍କ ପ୍ରତି ସେମାନଙ୍କର ଭକ୍ତି ଓ ସମ୍ମାନ ହ୍ରାସ ହୁଏ । ଏପରି ଦୁର୍ବଳ ଲୋକ ଅଭିଭାବକ ହୋଇ

ସେମାନଙ୍କୁ ଲାଳନ କରିବାର ଉପଯୁକ୍ତ ନୁହଁନ୍ତି ବୋଲି ସେମାନଙ୍କର ଅସ୍ପଷ୍ଟ ଧାରଣା ଜନ୍ମେ । ଅବଶ୍ୟ ଏ ବିଷୟ ପିଲାମାନେ ଏତେ ପରିଷ୍କାର ଭାବେ କହନ୍ତି ନାହିଁ କିମ୍ବା ବୁଝିପାରନ୍ତି ନାହିଁ । କିନ୍ତୁ ସେମାନଙ୍କର କୋମଳ ମନରେ ଏହି ବିଶ୍ୱାସ ସେମାନଙ୍କର ଅଜାଣାରେ ପ୍ରବେଶ କରି କ୍ରମେ ଦୃଢ଼ ହୁଏ ।

ଏହି ଧାରଣାର ବଶବର୍ତ୍ତୀ ହୋଇ ଓ ଶଙ୍କାନ୍ୱିତ ଗୃହସ୍ୱାମୀଙ୍କର ଉଦାସ ଓ ଅନାଦର ବ୍ୟବହାରରେ ମର୍ମାହତ ହୋଇ ସେମାନେ ଅପରିଚିତ ବାହାରର ଲୋକମାନଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି । ଲୋକଙ୍କଠାରୁ ଟିକିଏ ସ୍ନେହ ସହାନୁଭୂତି ପାଇଲେ, ପିଲାମାନେ ସେମାନଙ୍କଠାରେ ଅତ୍ୟନ୍ତ ଅନୁରକ୍ତ ହୋଇ ପଡ଼ନ୍ତି । ତେଣୁ ଗୃହର ଯାବତୀୟ ବିଷୟ ସେମାନଙ୍କଠାରେ ପ୍ରକାଶ କରି ଦିଅନ୍ତି । ଯଦି ବାହାରର ଲୋକ ସ୍ୱାର୍ଥପର ଓ ଖଳ ସ୍ୱଭାବର ହୋଇଥାଏ, ତେବେ ସେ ପରିବାରର ସର୍ବନାଶ ଘଟାଇ ନିଜର ଦୁରଭିସନ୍ଧି ପୂରଣ କରେ । ଅନେକ ସମୟରେ ଏହି ପ୍ରକାରର ଲୋକମାନଙ୍କ ଦ୍ୱାରା ପିଲାମାନେ ବିପଥଗାମୀ ହୋଇ ନିଜର ଜୀବନ ଓ ପରିବାରର ମାନ ସମ୍ମାନକୁ କଳଙ୍କିତ କରଥାନ୍ତି ।

ବାହାର ଲୋକ ଉତ୍ତମ ହେଲେ ସୁଦ୍ଧା ସେମାନଙ୍କ ସଙ୍ଗେ ପିଲାମାନଙ୍କର ଏରୂପ ସମ୍ବନ୍ଧ ପରିବାର ଓ ପିଲାମାନଙ୍କ ପକ୍ଷେ ଅହିତକର । ବାହାର ଲୋକର ସ୍ୱାର୍ଥ ଭିନ୍ନ । ସେ ଯେତେ ଭଲ ହେଲେ ସୁଦ୍ଧା, ଅନ୍ୟ ପରିବାରରେ ତା'ର ପ୍ରଭାବ ପଡ଼ିଲେ, ଉକ୍ତ ପରିବାରର ବ୍ୟକ୍ତିମାନଙ୍କ ମଧ୍ୟରେ ସ୍ନେହର ବନ୍ଧନ ଶିଥିଳ ଓ ଛିନ୍ନ ହୋଇଯାଏ । ଏହିରୂପେ ଶଙ୍କାଗ୍ରସ୍ତ ଲୋକର ଗାର୍ହସ୍ଥ୍ୟ ଜୀବନ ବିଷମୟ ହୋଇ ଉଠେ ।

ଶଙ୍କାଶୀଳ ଦୁନିଆର ହାତ ଧରିବା ସମ୍ଭାଳି ପାରେ ନାହିଁ । ନିଜର ଦୁର୍ବଳତା ହେତୁ ସେ ସୁରୁଖୁରୁରେ ପରିବାରଟିକୁ ଚଳାଇ ପାରେ ନାହିଁ । ଜୀବନ ସଂଗ୍ରାମରେ ପଦେ ପଦେ ପରାଜିତ ହେବାରୁ ତା'ର ଦୁର୍ଦ୍ଦଶା ବୃଦ୍ଧି ହୁଏ । ତେଣୁ ତା' ଉପରେ ନିର୍ଭର କରୁଥିବା ପରିବାରଟିର ମଧ୍ୟ ଦୁଃଖ ଦୁର୍ଦ୍ଦଶା ବଢ଼ିଯାଏ । ପରିବାରର କର୍ତ୍ତା ହେବାକୁ ସେ ସମ୍ପୂର୍ଣ୍ଣରୂପେ ଅନୁପଯୁକ୍ତ ।

ସହକାର ତରୁର ଆଶ୍ରାରେ କୋମଳ ମାଧବୀ ଲତା, ତା'ର ସୁକୁମାର ଅଙ୍ଗ ଲତିକାକୁ ଜଡ଼ିତ କରି, ଆପଣାର ମନୋହର ଫଳଫୁଲ ସମ୍ଭାରରେ ଉକ୍ତ ପାଦପର ଶୋଭା ବର୍ଦ୍ଧନ କରିଥାଏ । କେତେକ ପରିମାଣରେ ମଧ୍ୟ ଏହି ଲତିକାଟି ଝଡ଼, ବର୍ଷା, ଝଞ୍ଜା, ତୋଫାନର ହାତରୁ ଉକ୍ତ ବୃକ୍ଷଟିକୁ ରକ୍ଷାକରେ । ସେହିପରି ପରିବାରର ଲୋକମାନେ ଗୃହସ୍ୱାମୀଙ୍କର ଆଶ୍ରାରେ ରହି, ତାଙ୍କର ସୁଖ ଶାନ୍ତି ବୃଦ୍ଧି କରନ୍ତି । ଆଉ ମଧ୍ୟ ଅନେକ ସମୟରେ ଜୀବନ ସଂଗ୍ରାମରେ ତାହାଙ୍କୁ ସାହାଯ୍ୟ କରନ୍ତି । ଯେଉଁ ତରୁ ଝଞ୍ଜା ତୋଫାନର ହାତରେ ତିଷ୍ଠି ନ ପାରି ଭୂଶାୟିତ ହୁଏ, ସେ ନିଜ ସଙ୍ଗେ ତା'ର ଆଶ୍ରିତ ଲତିକାଟିକୁ ଭୂଶାୟିତ କରାଏ । ସେହିପରି ଶଙ୍କାନ୍ୱିତ ଲୋକ ଜୀବନ ସଂଗ୍ରାମରେ ନିଜେ ପତିତ ହେବା ସଙ୍ଗେ ସଙ୍ଗେ ପରିବାରଟିର ପତନର କାରଣ ହୋଇଥାନ୍ତି ।

ଶଙ୍କାଶୀଳ ଲୋକର କର୍ତ୍ତୃତ୍ୱାଧୀନରେ ଓ ଅଭିଭାବକତ୍ୱରେ ଥିବା ପିଲାମାନଙ୍କର ଉନ୍ନତି ହୋଇପାରେ ନାହିଁ । ସେ ସେମାନଙ୍କୁ ଉପଯୁକ୍ତ ଶିକ୍ଷାଦାନ କରି ପାରେନାହିଁ । ନିଜେ ସେମାନଙ୍କର ବିଶ୍ୱାସ ଓ ଭକ୍ତି ହରାଇବାରୁ, ସେ ଯାହା ଶିକ୍ଷାଦିଏ, ସେମାନେ ତାହା ଗ୍ରହଣ କରି ପାରନ୍ତି ନାହିଁ । ନିଜର ଚରିତ୍ର ଦୁର୍ବଳ ଓ ଦୋଷଯୁକ୍ତ ହୋଇଥିବାରୁ ସେ ପିଲାମାନଙ୍କର ଚରିତ୍ର ଓ ବ୍ୟକ୍ତିତ୍ୱ

ଗଠନ କରିଥାରେ ନାହିଁ । ସେ ପିଲମାନଙ୍କର ସ୍ପୃହା ଓ ଶକ୍ତି ଅନୁରୂପ ବୃତ୍ତି ବା ବ୍ୟବସାୟ ନିର୍ଦ୍ଧାରଣ କରିବାରେ ସେମାନଙ୍କୁ ସାହାଯ୍ୟ କରିପାରେ ନାହିଁ । ଅନେକ ସମୟରେ ତା'ର ଅଭିଭାବକତ୍ୱରେ ଥିବା ପିଲମାନେ ଆପଣାର କର୍ମକ୍ଷେତ୍ର ବା ବୃତ୍ତି ନିର୍ଦ୍ଧାରଣରେ ଭୁଲ୍ କରି ଜୀବନକୁ ବିଫଳ କରିଥାନ୍ତି । ଉଦାହରଣ ସ୍ୱରୂପ ଯଦି ଗୋଟିଏ ପିଲ ଭଲ ଚିତ୍ର ଅଙ୍କନ କରିପାରେ ଓ ଏ କଳାବିଦ୍ୟାରେ ପାରଦର୍ଶିତା ଲାଭ କରିବାକୁ ତା'ର ପ୍ରବୃତ୍ତି ଥାଏ, ତେବେ ତାକୁ ଆଇନ ବ୍ୟବସାୟ ଗ୍ରହଣ କରିବାକୁ ଦେଲେ, ତା'ର ଜୀବନ ବ୍ୟର୍ଥ ହୁଏ । କାରଣ ଆଇନ ବ୍ୟବସାୟ ପାଇଁ ଯେ ବାକ୍‌ପଟୁତା, ପ୍ରତ୍ୟୁତ୍ପନ୍ନମତିତା ପ୍ରଭୃତି ଗୁଣ ଆବଶ୍ୟକ, ସେ ସବୁ ତାହାର ନ ଥାଏ ।

ପ୍ରେମ ଶଙ୍କାଶୀଳ ଲୋକ ପକ୍ଷେ ଜ୍ୱାଳା ଓ ଯନ୍ତ୍ରଣାର ବିଷୟ । ପ୍ରେମର ଅମୃତ ଅଞ୍ଜଳି ପାନ କରିବା ପରିବର୍ତ୍ତେ, ତା'ର ବିଷ-ଜ୍ୱାଳାରେ ସେ ଅହରହ ପୋଡ଼ିମରେ । ସେ ଆପଣାର ମନୋମତ ସହଧର୍ମିଣୀ ନିର୍ବାଚନ କରିପାରେ ନାହିଁ । ତା' ଲାଗି ଅନ୍ୟମାନଙ୍କ ଦ୍ୱାରା ନିର୍ବାଚିତ ରମଣୀକୁ ସେ ବିବାହ କରେ । କାରଣ ଯେଉଁ ବାଳିକାକୁ ସେ ମନେ ମନେ ପ୍ରେମ କରେ, ଯାହାକୁ ହୃଦୟର ସିଂହାସନରେ ବସାଇ ଜୀବନର ଅର୍ଘ୍ୟ ଅର୍ପଣ କରେ, ଶଙ୍କା-ବଶତଃ ତାକୁ ବିବାହ କରିବାକୁ କାହାରେ ପ୍ରକାଶ କରିପାରେ ନାହିଁ । ଅଧିକନ୍ତୁ ନିଜର ଦୁର୍ବଳତା ଯୋଗୁଁ ପ୍ରତିବାଦ କରିବାକୁ ସାହସ ନ କରି ଅନ୍ୟମାନଙ୍କ ଦ୍ୱାରା ନିର୍ବାଚିତ ବାଳିକାକୁ ପତ୍ନୀରୂପେ ଗ୍ରହଣ କରିବାକୁ ସେ ବାଧ୍ୟ ହୋଇଥାଏ । ତେଣୁ ବିଫଳ ପ୍ରେମର ଜ୍ୱାଳାରେ ସେ ଅନ୍ତରେ ଅନ୍ତରେ ସାରା ଜୀବନ ପୋଡ଼ି ମରେ । ଏ ବେଦନା ଅନ୍ୟ କାହାରି ନିକଟରେ ପ୍ରକାଶ

କରି ସହାନୁଭୂତିରେ ସାନ୍ତ୍ୱନା ଲାଭ କରିବାକୁ ସ୍ପୃହା ତାର ଭାଗ୍ୟରେ ଘଟେ ନାହିଁ । କାରଣ ଶଙ୍କା ଏଥିରେ ତାକୁ ବାଧା ଦିଏ ।

କୌଣସି ବାଳିକା ଏପରି ଲୋକକୁ ପ୍ରେମ କଲେ ସେ ତାହାର ପ୍ରତିଦାନ ଦେଇ ପାରିବ ନାହିଁ । ପ୍ରେମର ପ୍ରତିଦାନ ପାଇଁ ସେ ତା'ର ଅନ୍ତର ସ୍ପନ୍ଦିତ ନ ହେଉଥାଏ, ଏପରି ନୁହେଁ, ଅଧିକନ୍ତୁ ତା'ର ହୃଦୟରେ ସେ ବାଳିକା ପ୍ରତି ପ୍ରେମ ପୂର୍ଣ୍ଣ ଥାଏ, କିନ୍ତୁ ଅନ୍ତରର ଭାବନାକୁ ବାହାରର ବ୍ୟବହାର, କଥାବାର୍ତ୍ତା ଓ ଭାବଭଙ୍ଗୀରେ ସେ ପ୍ରକାଶ କରି ପାରେନାହିଁ । ପ୍ରତିଦାନ ନ ପାଇ ଏପରି ପ୍ରଣୟର ଅବସାନ ହେଲେ ତା'ର ଅନ୍ତର ବିଫଳତାରେ ହାହାକାର କରିଉଠେ ।

ପ୍ରେମ ପରି ମଧ୍ୟ ଏପରି ଲୋକର ଦାମ୍ପତ୍ୟ ଜୀବନ ସୁଖକର ନୁହେଁ । ଏହାର କାରଣ ତା' ହୃଦୟର ଅସ୍ଥିରତା, ନିଜର ପ୍ରକୃତ ପ୍ରଣୟିନୀକୁ ସେ ପତ୍ନୀଭାବେ ପାଇପାରେ ନାହିଁ । ବାଧ୍ୟ ହୋଇ ସେ ଯାହାକୁ ପତ୍ନୀରୂପେ ଗ୍ରହଣ କରେ, ତା' ପ୍ରତି ତା'ର ପ୍ରେମ ନ ଥାଏ । ସେ ଶତଚେଷ୍ଟା କଲେ ସୁଦ୍ଧା ତା' ଅନ୍ତରରେ ଅବସ୍ଥିତ ପୂର୍ବ ପ୍ରଣୟିନୀଙ୍କର ଭାବନାକୁ ହୃଦୟରୁ ବିତାଡ଼ିତ କରି ପାରେନାହିଁ । ବରଂ କ୍ରମେ ସେ ମଧୁର ଭାବନାକୁ ଏକାନ୍ତ ମନରେ ଅତିରଞ୍ଜିତ ଓ ପରିବର୍ଦ୍ଧିତ କରି ଦିଏ । ଏଥିରେ ବିବାହିତା ପତ୍ନୀଙ୍କ ପ୍ରତି ତା'ର ବିଜାତୀୟ ଘୃଣା ପ୍ରବଳ ହୋଇ ଉଠେ । କଥା କଥାକେ ପତ୍ନୀଙ୍କ ସଙ୍ଗେ କଳହ ସୃଷ୍ଟି କରେ । ସବୁବେଳେ ନିର୍ମମ ଉଦାସୀନତା ଓ ହତାଦର ପ୍ରଦର୍ଶନ କରେ । ଅପଣାର ଶଙ୍କା ଓ ଘୃଣା ଯୋଗେ ପତ୍ନୀଙ୍କ ସଙ୍ଗେ ମିଳାମିଶା ନ କରି ତାଙ୍କ ଠାରୁ ଅନ୍ତର ହୋଇ ରହିବାକୁ ଚେଷ୍ଟା କରେ । ତା'ର ଏତାଦୃଶ ବ୍ୟବହାର ଦେଖି

ପତ୍ନୀଙ୍କର ମଧ୍ଯ ତା' ପ୍ରତି ସ୍ନେହ ଓ ପ୍ରେମ ଶୀତଳ ଓ ଶିଥିଳ ହୋଇଯାଏ । ଏହିରୂପେ ତା'ର ଦାମ୍ପତ୍ୟ ଜୀବନ ତିକ୍ତ ହୋଇ ପଡ଼େ ।

ଶଙ୍କା ସବୁ କ୍ଷେତ୍ରରେ ଜୀବନକୁ ବିଷମୟ କରେ, କିନ୍ତୁ ପାରିବାରିକ ଜୀବନରେ ଏହାର ତୀବ୍ରତା ଓ ଉତ୍କଟତା ଅତ୍ୟଧିକ ଅନୁଭୂତ ହୁଏ ।

ପାଞ୍ଚ

## ଶଙ୍କା ଈର୍ଷ୍ୟାର ଜନନୀ

"Envy is the enemy of happiness."

ଶଙ୍କାଯୁକ୍ତ ଲୋକ ଅହରହ ଈର୍ଷ୍ୟାନଳରେ ଜଳି ପୋଡ଼ି ମରୁଥାଏ । ଏହି ଅନଳରେ ତାହାର ଜୀବନର ସବୁ ସୁଖ ଶାନ୍ତି ଜଳିଯାଏ ।

ସାଧାରଣ ଲୋକ ନିରପେକ୍ଷ ଭାବେ ଅସ୍ମାନୁଶୀଳନ କରି ନିଜର ଦୋଷ ଦୁର୍ଗୁଣ ଦେଖିବାକୁ ସାଧାରଣତଃ ସମର୍ଥ ହୁଅନ୍ତି ନାହିଁ । ଯଦି ବା କେହି ନିଜର ଦୋଷ ବୁଝି ପାରନ୍ତି, ସେ ସବୁର ନିରାକରଣ ନିମନ୍ତେ ପ୍ରଗାଢ଼ ଚେଷ୍ଟା କରିପାରନ୍ତି ନାହିଁ । ଅଧିକନ୍ତୁ ଅନେକ ଲୋକ ନିଜର ଦୋଷ ଦୁର୍ଗୁଣକୁ ପ୍ରଶ୍ରୟ ଦିଅନ୍ତି । ନାନା ପ୍ରକାର ଅସାର ଯୁକ୍ତିରେ ନିଜ ଦୋଷ ଗୁଡ଼ିକର ଉତ୍କଟତା ପ୍ରଚ୍ଛନ୍ନ ରଖିବାକୁ ଚେଷ୍ଟା କରନ୍ତି । ଫଳତଃ ସାହସର ଅଦମ୍ୟ ମନୋବଳରେ ସ୍ୱୀୟ ଦୋଷ ଦୁର୍ଗୁଣ ବୁଝିଭୁଲି ନ କରି ସେ ସବୁର

ଅନିଷ୍ଟକାରୀ ପରିଣାମ ଭୋଗ କରନ୍ତି ଓ କମେ ଦୁର୍ବଳରୁ ଦୁର୍ବଳତର ହୁଅନ୍ତି ।

ଆମ୍ଭେମାନେ ଅନେକ ସମୟରେ କହୁଥାଉଁ ମନୁଷ୍ୟ ଦୋଷ ଶୂନ୍ୟ ହେବା ଅସମ୍ଭବ । ପ୍ରତ୍ୟେକ ଲୋକର ଦୋଷ, ଗୁଣ ଦୁଇଟା ଯାକ ଅଛି । ସୂକ୍ଷ୍ମ ଭାବେ ଦେଖିଲେ ମହାପୁରୁଷମାନଙ୍କ ଚରିତ୍ରରେ ମଧ୍ୟ ଦୋଷ ମିଳେ ।

ପର୍ବତ ଆରୋହଣ କରିବା କଷ୍ଟସାଧ୍ୟ । ପୁଣି ଶରୀରରେ ଶକ୍ତି ନ ଥିଲେ ଏହା ଅଧିକ କଷ୍ଟକର ହୋଇ ପଡ଼େ । ତା' ଉପରେ ଯଦି ଆରୋହଣ କରିବାକୁ ଥରେ ଅଧେ ଚେଷ୍ଟା କରି ବିଫଳ ହେବାକୁ ହୁଏ, ତେବେ ଦୁର୍ବଳ ଲୋକମାନେ ସହଜରେ ହତୋତ୍ସାହ ହୋଇ ପଡ଼ନ୍ତି । ଶେଷରେ ଏହା ସେମାନଙ୍କ ଶକ୍ତି ଓ ସାମର୍ଥ୍ୟରେ ସମ୍ଭବପର ନୁହେଁ ବୋଲି ଆପଣାର ମନକୁ ପ୍ରବୋଧ ଦେଇ ପର୍ବତ ଆରୋହଣ ଆକାଂକ୍ଷା ତ୍ୟାଗ କରନ୍ତି । ଦୁର୍ବଳମନା ନିଜର ଦୋଷ ଦୂର କରିବାକୁ ଥରେ ଅଧେ କ୍ଷୀଣ ଉଦ୍ୟମ କରି ଶେଷରେ ନିରାଶାରେ ଏହିରୂପେ ନିଜର ମନକୁ ସାନ୍ତ୍ୱନା ଦାନ କରନ୍ତି । ଯେଉଁ ବଳିଷ୍ଠ ଲୋକମାନେ ପର୍ବତ ଆରୋହଣ କଲେ କିମ୍ବା ନିଜର ଦୋଷ, ଦୁର୍ବଳତା ଦୂର କରି ପାରିଲେ, ସେମାନଙ୍କ ପ୍ରତି ଏତାଦୃଶ ଦୁର୍ବଳ ଲୋକମାନଙ୍କର ଈର୍ଷ୍ୟା ଜାତ ହୁଏ ନାହିଁ । ଏ ଶ୍ରେଣୀର ଲୋକ ଉଚ୍ଚାକାଂକ୍ଷା ତ୍ୟାଗ କରି ନିଜର କର୍ମ ଅଦାର ସନ୍ତୁଷ୍ଟ ରହନ୍ତି ।

କିନ୍ତୁ ଶଙ୍କାନ୍ୱିତ ଲୋକ ଏପରି ସନ୍ତୋଷ ଲାଭ କରିପାରେ ନାହିଁ । କାରଣ ମାନସିକ ନିର୍ବଳତାରେ ରହି ଆପଣାର ବିଫଳତା ଓ ତଜ୍ଜନିତ ଦୁଃଖକୁ ସେ ଅତିରଞ୍ଜିତ କରି ଦେଖେ । ତେଣୁ ସେ ନିଜର ଅବସ୍ଥାରେ ସନ୍ତୁଷ୍ଟ ହୋଇ ରହିପାରେ ନାହିଁ । ଅଥଚ

ଏବେଶ ଅବସ୍ଥାର ଢ଼କାତ କରିବାକୁ ସମର୍ଥ ହୁଏ ନାହିଁ । ପୁଣି ଅନ୍ୟମାନଙ୍କର ସଫଳତା ତାର ଚକ୍ଷୁରେ ଅତିରଞ୍ଜିତ ଓ ପରିବର୍ଦ୍ଧିତ ହୋଇ ପରିଲକ୍ଷିତ ହୁଏ । ଏଥିଯୋଗେ ତାର ଅନ୍ତରରେ ଅନ୍ୟମାନଙ୍କ ପ୍ରତି ଈର୍ଷ୍ୟା ଉଦ୍ଦୀପ୍ତ ହୋଇ ଉଠେ ।

ଶଙ୍କାଶୀଳ ଲୋକମାନେ ଯଦି ଅନ୍ୟମାନଙ୍କ ସଙ୍ଗେ ମିଳାମିଶା ଓ ଭାବର ବିନିମୟ କରୁଥାନ୍ତେ, ତେବେ ତାଙ୍କୁ ଏ ଉତ୍କଟ ଈର୍ଷାବେଗ ଆକ୍ରମଣ କରନ୍ତାନାହିଁ । ସେମାନଙ୍କର ଭାବନା ଅନ୍ୟର ସଂସର୍ଗ ଓ ଉପଦେଶରେ ପରିମାର୍ଜିତ ଓ ସଂଶୋଧିତ ହୋଇ ଯାଆନ୍ତା । ସେମାନେ ନିଜର ଦୁଃଖ ଓ ବିଫଳତାକୁ ବା ଅନ୍ୟର ସୁଖ ଓ ସାଫଲ୍ୟକୁ ଅତିରଞ୍ଜିତ କରି ଦେଖନ୍ତେ ନାହିଁ । ଅଧିକନ୍ତୁ ନିଜର ଦୋଷ ଦୁର୍ବଳତା ହୃଦୟଙ୍ଗମ କରି ପାରନ୍ତେ ଓ ସେସବୁ ବିଦୂରିତ କରିବାକୁ ପ୍ରେରଣା ପାଆନ୍ତେ । କିନ୍ତୁ ଶଙ୍କା ସେମାନଙ୍କୁ ଏ ସୁବିଧା ଓ ସୁଯୋଗରୁ ବଞ୍ଚିତ କରେ ।

ପୁଣି ଯେଉଁ ଶଙ୍କାଗ୍ରସ୍ତ ଲୋକର ପ୍ରକୃତ ପ୍ରତିଭା ଥାଏ, ଅଥଚ ଏହି ଶଙ୍କାବଶତଃ ସେ ପ୍ରତିଭା ବଳରେ କୌଣସି କାର୍ଯ୍ୟ ସାଧନ କରିବାକୁ ଅସମର୍ଥ ହୁଏ ଏବଂ ତା' ଅପେକ୍ଷା ନିକୃଷ୍ଟ ଗୁଣ-ସମ୍ପନ୍ନ ଲୋକ ଏପରି କର୍ମ ସମ୍ପାଦନ କରିବାର ସେ ଦେଖେ, ତେବେ ତା'ର ଯନ୍ତ୍ରଣା ଓ ମନସ୍ତାପ ଅବର୍ଣ୍ଣନୀୟ ହୋଇପଡ଼େ । ଲୋକ କଣ୍ଟକ ଶଯ୍ୟାଶାୟୀ ହେଲେ ଯେପରି ଯନ୍ତ୍ରଣା ଭୋଗ କରେ, ସେହିପରି ସେ ଈର୍ଷ୍ୟାର କଣ୍ଟକ ଶଯ୍ୟାରେ ଭୟଙ୍କର ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରେ । ଈର୍ଷ୍ୟାର କଣ୍ଟକ ଅହରହ ତାର ଶରୀରକୁ ବିଦ୍ଧକରେ । ମନର ଏ ଯନ୍ତ୍ରଣା ସହ୍ୟ କରି ନପାରି ସେ କଥା କଥାକେ ବିରକ୍ତି ଓ କ୍ରୋଧ ପ୍ରକାଶ କରେ । ତାର ଏ ଉଗ୍ର ଓ ଉଦ୍ଧତ୍ୟ ବ୍ୟବହାରରେ ଆତ୍ମୀୟ ସ୍ୱଜନ ଓ ବନ୍ଧୁ ବାନ୍ଧବମାନେ

ମର୍ମାହତ ହୋଇ ପଡ଼ନ୍ତି । ଏହାପରେ କ୍ରମେ ତାହାର ସ୍ନେହର ବନ୍ଧନ ଶିଥିଳ ହୋଇପଡ଼େ । ବନ୍ଧୁ ବାନ୍ଧବ ମାନଙ୍କ ଦ୍ୱାରା ପରିତ୍ୟକ୍ତହୋଇ ସେ ମାନସିକ ନିଃସଙ୍ଗତାରେ କାଳାତିପାତକରେ । ଏରୂପ ମାନସିକ ନିଃସଙ୍ଗତାରେ ଈର୍ଷ୍ୟା ହଳାହଳର ଉଗ୍ରତା ଶତ ଗୁଣରେ ବୃଦ୍ଧି ହୁଏ ଏବଂ ସେହି ଗରଳର ଜ୍ୱାଳାରେ ସେ ଅହରହ ଦଗ୍ଧ ହୁଏ ।

ପିଲାମାନେ ଏପରି ଈର୍ଷ୍ୟାପରାୟଣ ହେଲେ ସେମାନଙ୍କୁ ଆରୋଗ୍ୟ କରିବା ଟିକିଏ ସହଜସାଧ୍ୟ । ବୟସ୍କ ଲୋକମାନଙ୍କୁ ଈର୍ଷ୍ୟାର କବଳରୁ ମୁକ୍ତ କରିବା ଯେ ଅସମ୍ଭବ, ତା' ନୁହେଁ ତେବେ ଏହା କଠିନ ଓ ଦୀର୍ଘ ସାଧନାସାପେକ୍ଷ । ପିଲାମାନଙ୍କର ଏ ଦୋଷ ଅଳ୍ପାୟାସରେ ଦୂର କରାଯାଇପାରେ । ପ୍ରଥମେ ପିତା, ଅଭିଭାବକ କିମ୍ବା ଶିକ୍ଷକ, ପିଲଙ୍କର ବିଶ୍ୱାସ ଭାଜନ ଓ ସାଥି ତୁଲ୍ୟ ହେବାକୁ ଚେଷ୍ଟା କରିବା ଉଚିତ୍ । ଏପରି ବିଶ୍ୱାସ ଭାଜନ ହୋଇ ପାରିଲେ, ପିଲାମାନେ ସେମାନଙ୍କର ଅନ୍ତରର ଭାବ ପ୍ରକାଶ କରି ଦିଅନ୍ତି । ଏହାଦ୍ୱାରା ଈର୍ଷ୍ୟା ରାକ୍ଷସୀର ଉଚ୍ଛେଦ ହୋଇଯାଏ । କାରଣ ଏକାନ୍ତରେ ମନର ଭାବ ଗୋପନ ରଖି ଚିନ୍ତା ନ କଲେ ଈର୍ଷ୍ୟାର ବୃଦ୍ଧି ହୁଏନାହିଁ । ପିଲାମାନେ ତାଙ୍କର ମନର ଭାବ ପ୍ରକାଶ କରି ଦେଲାପରେ, ଅନୁଶୀଳନ କରି ଦେଖିବାକୁ ହେବ, ତାଙ୍କର ଈର୍ଷ୍ୟାର ଉତ୍ପତ୍ତିସ୍ଥଳ କେଉଁଠି । ସେହି ଉତ୍ପତ୍ତି ସ୍ଥଳଟିର ଉଚ୍ଛେଦ ସାଧନ କଲେ, ଈର୍ଷ୍ୟା ଆପେ ଆପେ ଦୂର ହୋଇଯାଏ ।

ଆତ୍ମପ୍ରତ୍ୟୟ ଈର୍ଷ୍ୟାର ପରମଶତ୍ରୁ । ଯାହାର ନିଜ ଉପରେ ବିଶ୍ୱାସ ଅଛି, ସେ ଅନ୍ୟକୁ ହିଂସା କରିବାକୁ ଯାଏ ନାହିଁ । କାରଣ ଅନ୍ୟଲୋକ ଯେ କର୍ମ ସାଧନ କରନ୍ତି, ସେ ଆତ୍ମବିଶ୍ୱାସ ବଳରେ ତାହା କରିପାରେ । ପିଲମାନଙ୍କୁ ଉତ୍ସାହିତ କରି ତାଙ୍କ ମନରେ

ଅନ୍ତଃପ୍ରତ୍ୟୟ ଜାଗ୍ରତ କରାଇଦେବ । ତାଙ୍କ ହୃଦୟରେ ସ୍ୱାସ୍ଥ୍ୟକର ପ୍ରତିଯୋଗିତାର ବୀଜ ବପନ କରିଦେବ । କିନ୍ତୁ ଏହାର ଅଧୋଗତି ହୋଇ ଯେପରି ପ୍ରନର୍ବାର ଈର୍ଷ୍ୟାରେ ପରିଣତ ନହୁଏ, ସେଥିପ୍ରତି ସାବଧାନ ଥିବ । ପିଲାର ନିଜପ୍ରତି ତୁଚ୍ଛ ଧାରଣା ଥିଲେ, ତାକୁ ସର୍ବପ୍ରଥମେ ଦୂର କରିବ । ତା'ର ଗୁଣର ପ୍ରଶଂସା ସହ ଅନ୍ୟ ସଙ୍ଗେ ତୁଳନାରେ ତାର ଉତ୍କର୍ଷ ଦେଖାଇ, ତାର ଅନ୍ତରରେ ଅତ୍ମ-ମୂଲ୍ୟ-ଜ୍ଞାନ ଜାଗ୍ରତ କରାଇବ । କିନ୍ତୁ ଏହା ଯେପରି ଅହଂଗର୍ବ ଓ ଅତ୍ମାଭିମାନରେ ପରିଣତ ନ ହୁଏ, ସେଥିପ୍ରତି ଦୃଷ୍ଟିଦେବ ।

ପୁରୁଷମାନଙ୍କ ଅପେକ୍ଷା ନାରୀମାନେ ଅଧିକ ସଂଖ୍ୟାରେ ଈର୍ଷ୍ୟାର କବଳରେ ପଡ଼ନ୍ତି । ନାରୀମାନେ ସାଧାରଣତଃ ପୁରୁଷମାନଙ୍କ ଅପେକ୍ଷା ଭାବ ପ୍ରବଣ ଓ ଦୁର୍ବଳମନା । ମନର ଏହି ଭାବପ୍ରବଣତା ଯୋଗୁ ଅକ୍ଳେଶରେ ସେମାନେ ଈର୍ଷ୍ୟା ରାକ୍ଷସୀର କବଳରେ ପଡ଼ନ୍ତି । ଅଜମଧ୍ୟ ପୁରୁଷ ମାନଙ୍କ ପରି ଅନେକ ଲୋକଙ୍କ ସଙ୍ଗେ ମିଳାମିଶା କରିବାକୁ ସେମାନଙ୍କର ସୁବିଧା ନ ଥାଏ । ତେଣୁ ସେମାନଙ୍କର ରୁଚି ଓ ଭାବନା ଶୋଧିତ ହୋଇ ପାରେ ନାହିଁ । ଅପେକ୍ଷାକୃତ ମାନସିକ ନିରୋଳତାରେ ବଢ଼ି ସେମାନଙ୍କର ଚିନ୍ତାଧାରା ଏକଦେଶୀ ହୋଇପଡ଼େ । ଏରୂପ ଏକଦେଶୀ ଭାବନାରେ ନିଜର ଦୁଃଖ ଓ ବିଫଳତାକୁ ଏବଂ ଅନ୍ୟର ସୁଖ ଓ ସଫଳତାକୁ ସେମାନେ ଅତିରଞ୍ଜନ କରି ଦେଖନ୍ତି । ତେଣୁ ପରଶ୍ରୀକାତରତା ଓ ଈର୍ଷ୍ୟା ସେମାନଙ୍କ ମନରେ ପ୍ରବେଶ କରେ ।

ଆଜ ମଧ୍ୟ ପୁରୁଷମାନଙ୍କପରି ଉଚ୍ଚଶିକ୍ଷା ଲାଭକରି ନିଜର ଚିନ୍ତାଧାରାକୁ ଶିକ୍ଷାର ଅଲୋକରେ ମାର୍ଜିତ କରିବା ସେମାନଙ୍କ ଭାଗ୍ୟରେ ସବୁବେଳେ ଘଟେ ନାହିଁ । ଏହି କାରଣରୁ ନିଜର

ସ୍ୱାଭାବିକ ଭାବପ୍ରବଣତା, ଲୋକ ସଂସର୍ଗର ସ୍ୱଳ୍ପତା, ଓ ଶିକ୍ଷାର ଅଭାବରେ ପଡ଼ି ଗୃହକୋଣରେ ଅପଣାର ଏକ ଦାଗଦର୍ଶୀ ଭାବନା ଯୋଗୁ ସେମାନେ ଈର୍ଷ୍ୟା ସ୍ୱଷଯୀର କବଳରେ ପଡ଼ନ୍ତି । ପୁଣି ସ୍ୱଚ୍ଛଳ ପରିବାରର ରମଣୀ, ଯେଉଁମାନଙ୍କୁ ଗୃହକର୍ମ କରିବାକୁ ହୁଏନାହିଁ, ସେମାନେ ଅତଶୀଘ୍ର ଓ ଅତ୍ୟଧିକ ପରିମାଣରେ ଈର୍ଷ୍ୟା-ପରାୟଣ ହୋଇ ପଡ଼ନ୍ତି । ସେମାନଙ୍କ କର୍ମହୀନ ଅଳସ ଜୀବନ ଈର୍ଷ୍ୟା ପରବଶ ହେବାର ଅଉ ଗୋଟିଏ କାରଣ ।

ନାରୀମାନଙ୍କର ରୂପଗର୍ବ ସ୍ୱାଭାବିକ । ଅନ୍ୟ କୌଣସି ରମଣୀର ସୌନ୍ଦର୍ଯ୍ୟ ଉତ୍କୃଷ୍ଟତର ହେଲେ, ସେମାନଙ୍କର ସହ୍ୟ ହୁଏ ନାହିଁ । ସେମାନେ ଈର୍ଷ୍ୟାପରବଶ ହୋଇ ସେ ସୁନ୍ଦରୀ ରମଣୀଙ୍କର ରୂପ ଓ ସୌନ୍ଦର୍ଯ୍ୟକୁ ନ୍ୟୂନ କରିବା ନିମନ୍ତେ ନାନାପ୍ରକାର ଦୋଷ ବାଛି ବସନ୍ତି । ଏହାଦ୍ୱାରା ପ୍ରକୃତରେ ସେ ସୁନ୍ଦରୀଙ୍କର ସୌନ୍ଦର୍ଯ୍ୟକୁ ହ୍ରାସ କରିଦେଲେ ବୋଲି ସେମାନଙ୍କର ଧାରଣା ଅଟେ । ଅଉମଧ୍ୟ ଏହାଦ୍ୱାରା ପ୍ରକାରାନ୍ତରେ ନିଜ ସୌନ୍ଦର୍ଯ୍ୟର ପ୍ରଶଂସା ହେଲା ଭାବି ଆତ୍ମଶ୍ଳାଘା ଅନୁଭବ କରନ୍ତି ।

ଆଜିକାଲି ନାରୀମାନଙ୍କ ମଧ୍ୟରେ ଈର୍ଷ୍ୟାର ଅଉ ଗୋଟିଏ କାରଣ ଦେଖାଯାଉଛି । କୌଣସି ରମଣୀ ଗୃହ କାରାକକ୍ଷ ତ୍ୟାଗ କରି, ପରଦାର କୃଷ୍ଣପଟଳ ଭେଦ ବାହାର ଜଗତକୁ ଆସି ଅଲୋକ ଲାଭ କରିବାଠାରୁ ଗୃହର ଅନ୍ଧକାର ଗହ୍ୱରରେ ପଡ଼ିଥିବା ଭଗିନୀମାନଙ୍କର ସହ୍ୟ ହୁଏ ନାହିଁ । ଶିକ୍ଷିତା ଭଗିନୀର ଅଧୋଗତି ହୋଇଛି ବୋଲି ଧାରଣା କରି ସହାନୁଭୂତରେ ସେମାନଙ୍କର ମନ ଯେ ଦୁଃଖିତ ହୁଏ, ତାହା ନୁହେଁ । ସେମାନେ ନିଜେ ଲାଙ୍ଗୁଳହୀନା ଶୃଗାଳୀ ଥିବାରୁ ଲାଙ୍ଗୁଳ ବିଶିଷ୍ଟା ଶୃଗାଳୀ ଦେଖି ସହ୍ୟ କରି ପାରନ୍ତି ନାହିଁ । ଶିକ୍ଷିତା ଭଗିନୀର ଶୋଭା ଓ ସମ୍ମାନ ଦେଖି

ଏମାନଙ୍କ ଅନ୍ତର ଈର୍ଷାନଳରେ ଜଳଯାଏ । ଅଥଚ ସେପରି ସ୍ତରକୁ ନିଜକୁ ଉନ୍ନତ କରିବାକୁ ଏମାନେ ମନରେ ବଳ ଓ ସାହସ ନ ଥାଏ । ତେଣୁ "ଅଙ୍ଗୁର କୋଳ ଖଟା" ବୋଲି ମୁହଁରେ କହି, ଭିତରେ ଭିତରେ ଈର୍ଷାରେ ଦଗ୍ଧ ହୁଅନ୍ତି ।

ଅନ୍ୟର ମଧ୍ୟ କୌଣସି ନାରୀ ପରଦା ନମାନି ଶିକ୍ଷାର ଆଲୋକ ଲାଭ କରିବାକୁ ଉଦ୍ୟମ କରୁଥିଲେ, ଏମାନେ ତା'ର ଉଚ୍ଚାକାଂକ୍ଷାରେ ବାଧା ସୃଷ୍ଟି କରନ୍ତି । ଏହାର ମୂଳରେ ଈର୍ଷା ନିହିତ ଥାଏ । ଉଚ୍ଚଶିକ୍ଷା ଅଭିଳାଷିଣୀ ଭଗିନୀ ଭବିଷ୍ୟତରେ ମାନ ସମ୍ମାନର ଅଧିକାରିଣୀ ହେବ, ଏହି ଆଶଙ୍କାରୁ ଏମାନଙ୍କର ଈର୍ଷା ଜାତ ହୁଏ । ସେମାନଙ୍କର ଏ ଦିଗରେ ଯେ ଶକ୍ତି କ୍ଷୟ ହୁଏ, ଉନ୍ନତ ଭାବରେ ତାହାର ବ୍ୟବହାର ହେଉଥିଲେ କେତେ ସୁଫଳ ଲାଭ ହେଉ ନଥାନ୍ତା ! ସେମାନେ ବୁଝିପାରନ୍ତି ନାହିଁ ଯେ ଏ ଈର୍ଷା ପରିବର୍ତ୍ତିରେ ଯଦି ନିଜର ମନୋବଳ ଦୃଢ଼କରି ନିଜକୁ ଉନ୍ନତ କରିବାକୁ ଚେଷ୍ଟା କରନ୍ତେ, ତେବେ ସେମାନେ ହୁଏତ ପ୍ରଗତି ପଥର ପଥିକମାନଙ୍କର ଅଗ୍ରଣୀ ହୋଇ ପାରନ୍ତେ ।

ସାଧାରଣତଃ ଈର୍ଷାପରାୟଣ ଯାହାକୁ ଈର୍ଷା କରେ, ତାର ଚାଲି ଚଳଣ, ହାବଭାବ, କଥାବାର୍ତ୍ତା, ଗୀତନାଚ, ଏପରିକି ତା'ର ଉପସ୍ଥିତି ତା'ପକ୍ଷରେ ଅସହ୍ୟ ହୋଇପଡ଼େ । କିନ୍ତୁ କୌଣସି ଈର୍ଷା କଲେ, ତା'ର ଦୁରବସ୍ଥା ଅନ୍ୟର ଅଧିକ ହୁଏ । ସେ ଯାହାକୁ ଈର୍ଷା କରେ ତାକୁ ହସିବାର ଦେଖିଲେ ଭାବେ, ମୋତେ ଦେଖି, ମୋର ଭାବ ଭଙ୍ଗୀ ଦେଖି, ହସୁଛି । ସେ ଦୁଃଖିତ ହେଲେ ଭାବେ, ମୋର ଵିଭବ ଦେଖି ଦୁଃଖିତ ଅଛି । ଏହିପରି ତା'ର ପ୍ରତ୍ୟେକ କାର୍ଯ୍ୟ ଈର୍ଷାକାରୀଙ୍କ ପକ୍ଷେ ଅସହ୍ୟ ହୋଇପଡ଼େ ।

ଅନେକ ସମୟରେ ବିନା କାରଣରେ ଶଙ୍କିତମନା ଈର୍ଷ୍ୟା କରିଥାଏ । କୌଣସି ଲୋକର ଉପସ୍ଥିତରେ ଶଙ୍କା କଣତଃ ସେ ଅସ୍ୱସ୍ତି ଅନୁଭବ କଲେ, ତା'ପ୍ରତି ତା'ର ଈର୍ଷ୍ୟା ଜାତ ହୁଏ । କେହୁ ତା'ର ସ୍ୱାଭାବିକ ବିକୃତ ଅଙ୍ଗଭଙ୍ଗୀ ଦେଖିଥିଲେ, ସେ ଘଟନାର ସ୍ମୃତି ସେ ଲୋକପ୍ରତି ଈର୍ଷ୍ୟା ଜାତ କରାଏ ।

ଅନେକ ସମୟରେ ଦୁରଭିସନ୍ଧିସମ୍ପନ୍ନ ଖଳଲୋକ ହସ୍ତେ ଶଙ୍କାନ୍ୱିତ ଲୋକ କ୍ରୀଡ଼ା ପୁତ୍ତଳିକା ହୋଇପଡ଼େ । ଏ ପ୍ରକାର ଖଳଲୋକ ଶଙ୍କାଯୁକ୍ତ ଲୋକସଙ୍ଗେ ବନ୍ଧୁତା କରି, ତା'ର ଦୋଷକୁ ଗୁଣଭାବେ ପ୍ରଶଂସା କରେ । ଏ ପ୍ରଶଂସାର ଦୁରଭିସନ୍ଧି ବୁଝି ନ ପାରି ଶଙ୍କାନ୍ୱିତ ମନରେ ଉତ୍‌ଫୁଲ୍ଲ ହୋଇଉଠେ । କାରଣ ଲୋକର ଅନ୍ତର ଚହ୍ନିବାକୁ ତାର ଦୁର୍ବଳ, ସଙ୍କୀର୍ଣ୍ଣ ଓ ଏକଦେଶଦର୍ଶୀ ମନର ଶକ୍ତି ଓ ସାମର୍ଥ୍ୟ ନଥାଏ । ସେ "ବିଷକୁମ୍ଭଂ ପୟୋମୁଖମ୍" ଲୋକଙ୍କୁ ଅନ୍ତରଙ୍ଗ ବନ୍ଧୁଭାବେ ଗ୍ରହଣ କରେ । ନାରୀ ହୋଇଥିଲେ ଏପରି ଲୋକ ଦ୍ୱାରା ଅନେକ ସମୟରେ ସେ ବିପଥଗାମିନୀ ହୋଇ ନିଜର ଜୀବନ କଳଙ୍କିତ କରିଥାଏ ଓ ଶେଷରେ ଉକ୍ତ ଲୋକ ଦ୍ୱାରା ମଧ୍ୟ ପରିତ୍ୟକ୍ତା ହୋଇଥାଏ । ପୁରୁଷ ହୋଇଥିଲେ ଧନସମ୍ପତ୍ତି ହରାଇ ବସିଥାଏ ।

ଚତୁର୍ଦ୍ଦିଗରୁ ବିଚାର କରି ଦେଖିଲେ ଶଙ୍କା ଜୀବନର ଉନ୍ନତମାର୍ଗରେ ଦୁରତିକ୍ରମ୍ୟ ତୁଙ୍ଗଶୈଳରୂପେ ଦଣ୍ଡାୟମାନ ହୋଇ ଲୋକକୁ ବିଫଳତା ଓ ଯାତନାର ନର୍କକୁଣ୍ଡରେ ନିମଜ୍ଜିତ କରେ । ଏଣୁ ଅବସ୍ଥାରୁ ଏ ଦୁରାରୋଗ୍ୟ ବ୍ୟାଧିର ଉଚ୍ଛେଦ ସାଧନା ସର୍ବଥା ବିଧେୟ ।

( ଛଅ )

# ସୌନ୍ଦର୍ଯ୍ୟ ପ୍ରକାଶ

ଜୀବନରେ ସୌନ୍ଦର୍ଯ୍ୟର ପ୍ରଭାବ ଅସୀମ । ସୌନ୍ଦର୍ଯ୍ୟ ପିପାସା ମନୁଷ୍ୟକୁ ନିମ୍ନସ୍ତରକୁ ଟେଣିଅସି ତା'ର ଅଧଃପତନ ସଙ୍ଘଟନ କରେନାହିଁ । ଏହା ମନୁଷ୍ୟର ପ୍ରାଣରେ ଉନ୍ନତ ଧରଣର ସ୍ପନ୍ଦନ ସୃଷ୍ଟିକରି ତାକୁ ପୂର୍ଣ୍ଣତାର ତୁଙ୍ଗ ଶିଖର ଅଭିମୁଖୀ କରାଏ । ବୀଣାର ମଧୁର ଝଙ୍କାର, ମୃଦୁ ଗାମିନୀ ତଟିନୀର କୁଳୁ କୁଳୁ ନିନାଦ, ଶିଶୁର କଳହାସ୍ୟ ଓ ଲଳିତ ଅଙ୍ଗଭଙ୍ଗୀ, ଦୂର ବନାନୀର ଅଭିନବ ଛବି, ରମଣୀର ବିମୋହନ କଟାକ୍ଷ, ନୀଳ ଆକାଶର ଅନନ୍ତ ଗାଢ଼ ନୀଳିମା, ଏସବୁ ମନୁଷ୍ୟର ପ୍ରାଣରେ ସେହି ସ୍ପନ୍ଦନ ସୃଷ୍ଟି କରେ, ଯହିଁରେ ତା'ର ଜୀବନ ସଙ୍ଗୀତମୟ ଓ ମଧୁମୟ ହୋଇଉଠେ । ସେ ବାସ୍ତବ ଜଗତର ନିର୍ମମ କଠୋରତା ଭୁଲିଯାଇ, ସ୍ୱପ୍ନପୁରୀରେ ବିଚରଣ କରେ । କ୍ଷଣକ ପାଇଁ ତାର ଅନ୍ତରର ସଂକୀର୍ଣ୍ଣତା ଭୁଲିଯାଇ ଉଦାର ଓ ଉନ୍ନତ ଭାବରେ ଉଦ୍‌ବୁଦ୍ଧ ହୋଇଉଠେ । ଏ ଅନୁଭୂତ ଚରମ ଲକ୍ଷ ଲାଭ ପାଇଁ ତା'ର ଗତକୁ କ୍ରମେ ବ୍ୟଗ୍ର

କରିଦିଏ । କିନ୍ତୁ ଶଙ୍କାଶୀଳ ନିଜେ ସୌନ୍ଦର୍ଯ୍ୟ ଉପଭୋଗ କରିପାରେ ନାହିଁ କିମ୍ବା ନିଜର ସୌନ୍ଦର୍ଯ୍ୟରେ, ଲଳିତ ଅଙ୍ଗଭଙ୍ଗୀରେ ଅନ୍ୟର ଅନ୍ତରକୁ ଉଲ୍ଲସିତ କରିପାରେ ନାହିଁ ।

କେବଳ ଶରୀରର ବାହ୍ୟିକ ରୂପରେ ସୌନ୍ଦର୍ଯ୍ୟ ନିହିତ ନ ଥାଏ । ଅନେକ ସ୍ଥଳରେ ଦେଖା ଯାଇଥାଏ ରୂପବତୀ ନିଜର ରୂପବିଭବରେ ଦର୍ଶକର ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିପାରେ ନାହିଁ, ଅଥଚ ଅଳ୍ପକେଣେ ରୂପହୀନା ରମଣୀ ଆପଣାର ସ୍ୱାଭାବିକ ଲଳିତ ଅଙ୍ଗଭଙ୍ଗୀରେ ଲୋକର ପ୍ରାଣ ପୁଲକିତ କରି ନୟନମନ ବନ୍ଧ କରେ । ଅନ୍ତରର ସୌନ୍ଦର୍ଯ୍ୟ ପ୍ରକୃତ ସୌନ୍ଦର୍ଯ୍ୟ, ଶରୀରର ରୂପ ତା'ର ପରିପୂରକ । ଗୁଲ୍ ଚଳନ, ଠାଣି ମାଣି, ଅଙ୍ଗସଞ୍ଚାଳନ, ନୟନର ଛଟକ ଓ କଥାଭାଷାର ଭଙ୍ଗୀରେ ଅନ୍ତରର ପ୍ରାକୃତିକ ସୌନ୍ଦର୍ଯ୍ୟ ଫୁଟିଉଠେ । ଏ ସ୍ୱାଭାବିକ ଶୋଭା ସନ୍ଦର୍ଶନ କରି ମନୁଷ୍ୟ ମୁଗ୍ଧ ହୋଇଯାଏ । ତା'ର ଅନ୍ତରରେ ଉଲ୍ଲସିତଧରଣର କମ୍ପନ ସୃଷ୍ଟି ହୁଏ । ସେ ଉଦାର ଓ ଉନ୍ନତ ହୋଇଉଠେ ।

କିନ୍ତୁ ଶଙ୍କାଯୁକ୍ତ ଲୋକଠାରେ ଏପରି ସ୍ୱାଭାବିକ ସୁନ୍ଦର ଅଙ୍ଗଭଙ୍ଗୀ ଦେଖିବାକୁ ମିଳେନାହିଁ । କାରଣ ଶଙ୍କାବଶତଃ ସେ ଅନ୍ତରର ସୌନ୍ଦର୍ଯ୍ୟକୁ ସ୍ୱାଭାବିକ ରୀତିରେ ତାହାରେ ପ୍ରକାଶ କରିପାରେ ନାହିଁ । ତାହାର ଅଙ୍ଗଗୁଳନ ଓ କଥାର ଭଙ୍ଗୀ, ଅସ୍ୱାଭାବିକ ଓ ଅପ୍ରାକୃତିକ । ତେଣୁ ତାହା ଅନ୍ୟର ହୃଦୟରେ ସୌନ୍ଦର୍ଯ୍ୟବୋଧର ଉଲ୍ଲାସ ସୃଷ୍ଟି କରିପାରେ ନାହିଁ ; ଅଧିକନ୍ତୁ ଘୃଣା ଓ ବିରକ୍ତି ଜାତ କରେ । ଏଥିପାଇଁ ଶଙ୍କାଗ୍ରସ୍ତ ଲୋକ ଅନ୍ୟର ଚକ୍ଷୁଶୂଳ ହୋଇପଡ଼େ । ସେହିପରି ସେ ଅନ୍ୟର ସୌନ୍ଦର୍ଯ୍ୟ ସନ୍ଦର୍ଶନ କରେ କିନ୍ତୁ ତା'ର ମାଧୁର୍ଯ୍ୟ ଉପଭୋଗ କରି ପାରେନାହିଁ । କାରଣ ସୌନ୍ଦର୍ଯ୍ୟ ଉପଭୋଗରେ ଅନ୍ତରରେ ଯେ ଉଚ୍ଛ୍ୱାସ ସୃଷ୍ଟି ହୁଏ,

ବାହାରକୁ ତା'ର ଲକ୍ଷଣ ଗୁଡ଼ିକ ସ୍ୱତଃ ପ୍ରକାଶିତ ହୋଇପଡ଼େ । କିନ୍ତୁ ଶଙ୍କାଶୀଳ ଲୋକ ସେ ସବୁକୁ ବସ୍ତୁକରେ । କୌଣସି ହାସ୍ୟ କୌତୁକ ଦୃଶ୍ୟରେ ମନୁଷ୍ୟ ଯଦି ନିଜେ ହସି ନ ପାରେ, ତେବେ ସେ ତାହାର ମାଧୁର୍ଯ୍ୟ ଉପଭୋଗ କରି ପାରିବ କି ?

ସୌନ୍ଦର୍ଯ୍ୟ ସୃଷ୍ଟିକରିବା କଠିନ ହୋଇପାରେ କିନ୍ତୁ ସୌନ୍ଦର୍ଯ୍ୟ ଉପଭୋଗ କରିବା କଠିନ ନୁହେଁ । ଏ ଉଭୟ ସୁଖରୁ ଶଙ୍କାନ୍ୱିତ ବଞ୍ଚିତ ହୁଏ ।

ଲଳିତ ଅଙ୍ଗଭଙ୍ଗୀରେ ସୌନ୍ଦର୍ଯ୍ୟ ସୃଷ୍ଟି କରିବା ମନୁଷ୍ୟର ଜନ୍ମଗତ କଳା ନୁହେଁ । ଏହା ସାଧନା ଓ ଅଭ୍ୟାସରେ ଲାଭ କରାଯାଏ । ଶଙ୍କାଗ୍ରସ୍ତ-ହୃଦୟ ଲୋକର ଉପସ୍ଥିତିରେ ଶଙ୍କା ଓ ଭୟରେ ଥରଉଠେ । ତେଣୁ ଏ କଳା ଲାଭ କରିବାକୁ ଯେ ସାଧନା ଓ ପ୍ରଚେଷ୍ଟା ଅବଶ୍ୟକ, ସେ ତାହା କରିପାରେ ନାହିଁ । ଗୋଟିଏ ଲୋକ ପାଣିରେ ବୁଡ଼ିଯାଉଥିବା ବେଳେ ନିଜର ଜୀବନ ରକ୍ଷା କରିବାକୁ ଚେଷ୍ଟା କରିବା ଛଡ଼ା ଅନ୍ୟ କୌଣସି ଭାବନା କରି ପାରେନା । ସେହିପରି ଲୋକମାନଙ୍କ ସମ୍ମୁଖରେ ଶଙ୍କା ଓ ସଂକୋଚରେ ସଢ଼ିଯାଉଥିବା ଲୋକ, ନିଜର ଆତ୍ମରକ୍ଷା କରିବାକୁ ଚେଷ୍ଟା କରିବା ଛଡ଼ା ଅନ୍ୟ ଧାରଣା କରିପାରେନା । ସେତେ-ବେଳେ ସେ ଚେଷ୍ଟାକରେ କପରି ଲୋକଲୋଚନ ଅନ୍ତରାଳକୁ ଖସିଯିବ । ସେଥିରେ ସଫଳକାମ ନହେଲେ ଭୀତତ୍ରସ୍ତ ହୋଇ ଅସ୍ୱାଭାବିକ ଭାବେ ନୀରବ ଓ ଗମ୍ଭୀର ରହେ । ତା'ର ସ୍ୱଚ୍ଛନ୍ଦତା ନଥାଏ, ଏପରି ଅବସ୍ଥାରେ ଲଳିତ ଅଙ୍ଗଭଙ୍ଗୀରେ ଲୋକମାନଙ୍କୁ ମୁଗ୍ଧ କରିବା, ତା' ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ପିଲମାନଙ୍କର ଯେପରି ଏ ଦୁର୍ଦ୍ଦଶା ନ ହୁଏ, ସେଥିପ୍ରତି ସାବଧାନ ହେବାକୁ ହେବ । ନିଜର ସ୍ୱାଭାବିକ ଅଙ୍ଗଭଙ୍ଗୀରେ

ଯେପରି ସେମାନେ ସମସ୍ତଙ୍କୁ ମୁଗ୍ଧ କରି ସର୍ବଜନପ୍ରିୟ ହୋଇ ପାରିବେ, ସେଥିପ୍ରତି ପିତାମାତାଙ୍କର ଦୃଷ୍ଟି ରହିବା ଉଚିତ । ପ୍ରଥମେ ଶଙ୍କା ଯେପରି ସେମାନଙ୍କୁ ସ୍ପର୍ଶ ନ କରେ ତାହା ଦେଖିବାକୁ ହେବ । ଦ୍ୱିତୀୟରେ ପିଲାମାନେ ଅସ୍ୱାଭାବିକ ଅଙ୍ଗଭଙ୍ଗୀ କଲେ ସେମାନଙ୍କୁ ସଂଶୋଧନ କରିଦେବ । ବ୍ୟକ୍ତିତ୍ୱ ପରି ପ୍ରତ୍ୟେକ ଲୋକର ଅଙ୍ଗଭଙ୍ଗୀରେ ବିଶିଷ୍ଟତା ଅଛି । କୃତ୍ରିମତା ବା ଅନ୍ୟ ଅନୁକରଣ ଏ ବିଶିଷ୍ଟତାକୁ ନଷ୍ଟ କରିଦିଏ । ପିଲାମାନେ ଅନୁକରଣ ପ୍ରିୟ, ସେମାନେ ଯେପରି ଏ ବିଷୟରେ କାହାରିକୁ ଅନୁକରଣ ନ କରନ୍ତି, ସେଥିପ୍ରତି ଜାଗ୍ରତ ରହିବାକୁ ପଡ଼ିବ ।

ପିଲାମାନଙ୍କୁ ସୁନ୍ଦର ବେଶଭୂଷାରେ ସଜାଇ ଦେବ । ପୋଷାକ ପରିଚ୍ଛଦ ମୂଲ୍ୟବାନ ହେବାର ଆବଶ୍ୟକତା ନାହିଁ; କିନ୍ତୁ ସୁନ୍ଦର ଓ ରୁଚିକର ହେବା ଆବଶ୍ୟକ । ପିଲାମାନେ ନିଜର ବେଶଭୂଷା ଲାଗି କୌଣସିଠାରେ ଉପହସିତ ବା ଅପମାନିତ ହେଲେ, ନିଜପ୍ରତି ଅଶ୍ରଦ୍ଧାର ଭାବ ସେମାନଙ୍କ ମନରେ ଜାଗ୍ରତ ହୁଏ । ନିଜକୁ ସେମାନେ ଅନ୍ୟମାନଙ୍କର ସମତୁଲ୍ୟ ଭାବିପାରନ୍ତି ନାହିଁ । ତେଣୁ କ୍ରମେ ଶଙ୍କା ସେମାନଙ୍କୁ ଆକ୍ରମଣ କରେ । ମନରେ ଶଙ୍କାର ପ୍ରବେଶ ହେଲେ, ସ୍ୱାଭାବିକ ଅଙ୍ଗଭଙ୍ଗୀ ସମ୍ଭବପର ହୁଏ ନାହିଁ ।

ମନ ଉପରେ ବେଶଭୂଷାର ପ୍ରଭାବ ଅସୀମ । ଏ ବିଷୟ ସମସ୍ତେ ଅଳ୍ପାଧିକ ଅନୁଭବ କରନ୍ତି । ବୀରବେଶରେ ସଜ୍ଜିତ ହେଲେ ମନରେ ବୀରରସ ଜାତିଉଠେ । ରସିକ ବେଶରେ ସଜ୍ଜିତ ହେଲେ ମନରେ ଭୋଗବିଳାସର କାମନା ଉଦିତ ହୁଏ । ସନ୍ନ୍ୟାସୀ ବେଶ ଧାରଣ କଲେ ମନରେ ପବିତ୍ର ଧର୍ମଭାବ ଜାତ ହୁଏ । ଏଥିପାଇଁ ବିଭିନ୍ନ କର୍ମସମ୍ପାଦନ ବେଳେ ଆମ୍ଭେମାନେ ବିଭିନ୍ନ

ବେଶଭୂଷା ପରିଧାନ କରନ୍ତି । ବୀରବେଶରେ ସଜ୍ଜିତ ହୋଇ ଧର୍ମ-ଚର୍ଚ୍ଚା ବା ଦେବାରାଧନା କରିବାକୁ ଗଲେ କିମ୍ବା ଗୈରିକ କୌପୀନ ଧାରଣ କରି ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଅଭୀଷ୍ଟ ସିଦ୍ଧି ପାଇଁ ମନରେ ଉପଯୁକ୍ତ ପ୍ରେରଣା ଅସେନାହିଁ । ଏ ବିଷୟ ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ । ତେଣୁ ସ୍ୱବେଶ ହେବାରେ ଅବହେଳା କଲେ, ମନର ବଳ ହ୍ରାସ ହେବ ଓ କ୍ରମେ ଅଜ୍ଞାତସାରରେ ଶଙ୍କା ହୃଦୟରେ ପ୍ରବେଶ କରିବ । ଏହାଦ୍ୱାରା ସ୍ୱାଭାବିକ ଚିଆ ଚାଣି ଓ ଅଙ୍ଗଭଙ୍ଗୀ ବ୍ୟାହତ ହେବ । ତେଣୁ ତାହାର ଦୃଷ୍ଟି ଆକର୍ଷଣ କରି ପ୍ରିୟପାତ୍ର ହେବା ଦୁରୂହ ହେବ ।

ଅଙ୍ଗଭଙ୍ଗୀ ପରି କଥାଭାଷାର ଭଙ୍ଗୀ ମଧ୍ୟ ସ୍ୱାଭାବିକ ହେବା ଆବଶ୍ୟକ । ମିଷ୍ଟବାକ୍ୟ ଓ ମଧୁର କଣ୍ଠସ୍ୱର ପ୍ରାଣରେ ଯେ ଆନନ୍ଦ ସୃଷ୍ଟି କରେ, ତା'ର ପ୍ରଭାବ ଅସୀମ । ଯେଉଁମାନଙ୍କର ମିଷ୍ଟସ୍ୱର ଥାଏ, ସେମାନେ ସମସ୍ତଙ୍କର ପ୍ରିୟପାତ୍ର ହୋଇଥାନ୍ତି । ଅନ୍ତରରେ କୋମଳ ଭାବ ପୂର୍ଣ୍ଣ ଥିଲେ ସୁଦ୍ଧା ରୁକ୍ଷ ସ୍ୱରରେ କଥାବାର୍ତ୍ତା କଲେ ହୃଦୟଗ୍ରାହୀ ହୁଏନାହିଁ । ତେଣୁ ଏପରି ଲୋକ ସମସ୍ତଙ୍କର ଅପ୍ରିୟ ହୁଏ । ମିଷ୍ଟଭାଷା ଜନ୍ମଗତ କଳା ନୁହେଁ । ସାଧନା ଓ ଅଭ୍ୟାସରେ ଏହା ଲାଭକରିଯାଏ । କଣ୍ଠସ୍ୱର ଜନ୍ମଗତ ଗୁଣ; କିନ୍ତୁ ସାଧନା ବଳରେ ଏହାର ଯଥେଷ୍ଟ ଉନ୍ନତି କରାଯାଇପାରେ ।

କଥାବାର୍ତ୍ତାର ଭଙ୍ଗୀ ସର୍ବଦା ସାଧନାସାପେକ୍ଷ । ଅଙ୍ଗସଞ୍ଚାଳନ, ମୁଖଭଙ୍ଗୀ ଓ କଥାଭାଷାର କଳତୀ ସଙ୍ଗେ ଅନ୍ତର ଭାବର ସାମଞ୍ଜସ୍ୟ ରଖିବା ଏକାନ୍ତ ଆବଶ୍ୟକ । ଏପରି ନ କଲେ ଲୋକ ମନରେ ବିଶେଷ ଛାପ ଦେଇ ହୁଏନାହିଁ । ଯେଉଁମାନେ ଜନ-ନେତା ଓ ଦେଶସେବକ, ସେମାନଙ୍କର ଏ ଗୁଣ ନିତାନ୍ତ ଆବଶ୍ୟକ । ଏ ଗୁଣ ଲାଭକରିବାକୁ ହେଲେ ପିଲାଦିନରୁ ସାଧନା

କରିବାକୁ ଦେବ । ପିତାମାତାଙ୍କର ଏଥିରେ ଗୁରୁଦାୟିତ୍ୱ ଅଛି । ସେମାନେ ଯତ୍ନକଲେ ସନ୍ତାନ ସନ୍ତତିମାନେ ଅକ୍ଳେଶରେ ଏ ଗୁଣ ଲାଭ କରିପାରିବେ । ଅନେକ ସମୟରେ ଦେଖାଯାଇଥାଏ, ପିତା ମାତା ଓ ଅଭିଭାବକମାନେ ସେମାନଙ୍କର ପିଲାମାନଙ୍କୁ ଦୁର୍ବୋଧ୍ୟ ଭାଷାରେ କୌଣସି ବିଷୟ କଣ୍ଠସ୍ଥ କରିବାକୁ ଦେଇ, ତା'ର ପୁନରାବୃତ୍ତି କରାଇଥାନ୍ତି । ପିଲାମାନେ ଉକ୍ତ ଭାଷା ବୁଝି ନ ପାରୁ-ଥିବାରୁ, ବିଷୟଟିର ଭାବ ହୃଦୟଙ୍ଗମ କରିପାରନ୍ତି ନାହିଁ । କେବଳ ଶୁକପକ୍ଷୀ ପରି ଶବ୍ଦାବଳୀକୁ କଣ୍ଠସ୍ଥ କରିପକାନ୍ତି ଓ ପୁନରାବୃତ୍ତି ବେଳେ କୌଣସି ପ୍ରକାର ଭାବଭଙ୍ଗୀ ପ୍ରକାଶ ନକରି ଶୁକପକ୍ଷୀ ସଦୃଶ ନୀରସଭାବେ ବିଷୟଟିର ଅବତାରଣା କରି-ଦିଅନ୍ତି । ଏହା ସେମାନଙ୍କ ପକ୍ଷେ ମାରାତ୍ମକ । ଆରମ୍ଭରୁ ଅନ୍ତରର ଭାବ ସଙ୍ଗେ ଭାଷାର ପ୍ରକାଶ ଓ ମୁଖଭଙ୍ଗୀର ସାମଞ୍ଜସ୍ୟ ରଖି ଭାବପ୍ରକାଶର କୌଶଳ ସେମାନଙ୍କୁ ଶିକ୍ଷାଦେବା ଆବଶ୍ୟକ ।

ଅନ୍ୟର ଅଙ୍ଗଭଙ୍ଗୀକୁ ଅନୁକରଣ କରିବାକୁ ପିଲାମାନଙ୍କୁ ପ୍ରଶ୍ରୟ ଦେବନାହିଁ । ଏ ରୀତିରେ ଅଙ୍ଗଭଙ୍ଗୀ କରିବାକୁ ଗଲେ, ତାହା ନୀରସ ଓ ପ୍ରାଣହୀନ ହୋଇଥାଏ । ଯନ୍ତ୍ରଚାଳିତ ପୁତ୍ତଳିକା ପରି ସେମାନେ ଅଭିନୟ କରିଯାନ୍ତି । ଅଂଗଭଂଗୀ ସଂଗେ ଭାବର ସାମଞ୍ଜସ୍ୟ ଥିଲେ, ତାହା ଜୀବନ୍ତ ଓ ମନମୁଗ୍ଧକର ହୁଏ । ହାସ୍ୟରସର ବର୍ଣ୍ଣନା କଲାବେଳେ ଯଦି ମୁଖମଣ୍ଡଳ ଉଜ୍ଜ୍ୱଳ ଓ ଉତ୍‌ଫୁଲ୍ଲ ହୋଇ ନ ଉଠେ, ଅଧରରେ ଯଦି କ୍ଷୀଣ ହାସ୍ୟରେଖା ଦେଖା ନ ଦିଏ, ନୟନରୁ ଯଦି ସରସତାର ମାଧୁର୍ଯ୍ୟ ଫୁଟି ନ ପଡ଼େ, ତେବେ ତାହା ହୃଦୟଗ୍ରାହୀ ହୋଇପାରେନା' । ସେହିପରି କରୁଣ ରସ ବର୍ଣ୍ଣନାବେଳେ ଯଦି ସହାନୁଭୂତିରେ ନୟନ ଲୋତକ ଛଳଛଳ ନ ହୁଏ, ଦୟାରେ ବିଗଳିତ ହୃଦୟର ଉଚ୍ଛ୍ୱାସ ଉଠି ଯଦି

କଣ୍ଠରୋଧ ନ କରେ, ମୁଖରେ ଯଦି ସମବେଦନାର ଛାୟା ଫୁଟି ନ ଉଠେ, ତେବେ ତାହା ପ୍ରାଣକୁ ସ୍ପର୍ଶ କରିପାରେ ନାହିଁ । ଭାବନା, ଭାଷା ଓ ପ୍ରକାଶର ଭଂଗୀ, ଏ ସବୁର ସାମଞ୍ଜସ୍ୟ ଥିଲେ ଏହା ସମ୍ଭବପର ହୁଏ ।

ଏ ଗୁଣ ଉଦ୍ଭାବିବା ନିମନ୍ତେ ପିଲମାନଙ୍କୁ ତାଙ୍କର ଭାଷାରେ ତାଙ୍କ ଜୀବନର କୌଣସି ଘଟନାର ବର୍ଣ୍ଣନା କରିବାକୁ ଦେବ । ସେମାନେ ବର୍ଣ୍ଣନା କରିବା ବେଳେ ଦେଖିବ, ତାଙ୍କ ଭାବ ସଙ୍ଗେ ଭାଷା, ପ୍ରକାଶଭଂଗୀ ଓ ଅଂଗଗୁଳନର ସାମଞ୍ଜସ୍ୟ ରହୁଛି କି ନାହିଁ । କୌଣସିଠାରେ ତ୍ରୁଟି ଦେଖିଲେ ସଂଶୋଧନ କରିଦେବ । ସାଧାରଣତଃ ନିଃଶଙ୍କ ମନରେ କଥାବାର୍ତ୍ତା କଲେ, ଏ ସବୁର ସାମଞ୍ଜସ୍ୟ ରହେ । ତେଣୁ ଶଙ୍କା ଯେପରି ପିଲମାନଙ୍କ ମନକୁ ସ୍ପର୍ଶ ନ କରେ ସେଥିପ୍ରତି ଦୃଷ୍ଟି ଦେବ ।

ନୃତ୍ୟକଳା ନାଚନାଗି ଉଦ୍ଦିଷ୍ଟଙ୍କର ଯୋଗ୍ୟ ହେଲେହେଁ ନାରୀମାନଙ୍କର ବିଶିଷ୍ଟ ଗୁଣ ଓ ଭୂଷଣ ସଦୃଶ । ଏହା ଅଂଗଭଂଗୀର ଗୋଟିଏ ବିଶିଷ୍ଟ ଅଂଶ । ନୃତ୍ୟକଳା ସାଧାରଣତଃ ମଧୁର ରସାତ୍ମକ; ସମୟ ସମୟରେ ଏହା ଭକ୍ତିରସ ଓ ବୀରରସ ମଧ୍ୟ ପ୍ରକାଶ କରିଥାଏ । ମଧୁର ରସ ଶୃଙ୍ଗାର ବିଷୟ ନୁହେଁ, ଏହା ଅଦ୍ଭୁତରସ । ଏହି ମଧୁର ରସରୁ ମନୁଷ୍ୟର ସମସ୍ତ ସୁଗୁଣର ଉତ୍ପତ୍ତି । ନାୟକ ନାୟିକାମାନଙ୍କର ପରସ୍ପର ପ୍ରତି ଆକର୍ଷଣ, ଲୁହର ମୋହ ଓ ମିଳନର ଆବେଗରୁ ପ୍ରେମ, ଶାନ୍ତି, ଭକ୍ତି, ଦୟା, କ୍ଷମା, ସ୍ନେହ ଓ ତିତିକ୍ଷା ପ୍ରଭୃତି ମନୁଷ୍ୟର ସକଳ ସଦ୍‌ଗୁଣର ଉତ୍ପତ୍ତି । ଜୀବଜଗତର ବିବର୍ତ୍ତନ ଓ କ୍ରମବିକାଶ ଅନୁଶୀଳନ କଲେ ଏ ସତ୍ୟ ଉପଲବ୍ଧି କରିହୁଏ । କିନ୍ତୁ ସେ ବିଷୟ ଏଠାରେ ଆଲୋଚ୍ୟ ନୁହେଁ ।

ତେବେ ଏତିକି ବୁଝାଯାଇପାରେ ଯେ, ପ୍ରଥମେ ଆଦମ ନର-ନାରୀ ଯୌନ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ପରସ୍ପର ପ୍ରତି ଆକୃଷ୍ଟ ହେଲେ କ୍ଷେପରେ ଗୋଟିଏ ଅଙ୍କୁର ବୃଦ୍ଧି ହୋଇ କାଳକ୍ରମେ ବିଶାଳ ବୃକ୍ଷରେ ପରିଣତ ହୁଏ, ସେହିପରି ନରନାରୀଙ୍କର ଏହି ଆଦମ ଯୌନ ଆକର୍ଷଣ କ୍ରମ ଅଭିବୃଦ୍ଧିରେ ବିଶ୍ୱ ପ୍ରେମରେ ପରିଣତ ହେଲା । ସେ ନାରୀକୁ ସ୍ନେହ କରିବାକୁ ଶିଖି କ୍ରମେ ସନ୍ତାନ ସନ୍ତତି, ପରିବାର, ଆତ୍ମୀୟସ୍ୱଜନ, ଗ୍ରାମବାସୀ ଓ ଦେଶ-ବାସୀଙ୍କୁ ଭଲପାଇ ଶେଷରେ ସାରା ମାନବ ସୃଷ୍ଟିକୁ ଭଲପାଇବାକୁ ଶିଖିଲା । ଏ ସମସ୍ତଙ୍କର ମୂଳ ସେହି ଆଦିରସ । ତେଣୁ ଏହାକୁ ହେୟ ଓ ତୁଚ୍ଛଜ୍ଞାନ କରିବା ଅର୍ଥ, ନିଜର ଅସ୍ତିତ୍ୱକୁ ଅସ୍ୱୀକାର କରିବା । କିନ୍ତୁ ଶଙ୍କାନ୍ୱିତ ଏହି ନୃତ୍ୟକଳାର ମାଧୁର୍ଯ୍ୟ ସୃଷ୍ଟିକରି ଅନ୍ୟମାନଙ୍କୁ ଉପଭୋଗ କରାଇ ପାରେନାହିଁ କି ନିଜେ ଉପଭୋଗ କରିପାରେ ନାହିଁ । ଏ ଦିଗରେ ସେ ଚେଷ୍ଟାକଲେ ମଧ୍ୟ ଢ଼ଙ୍ଗ ଶିଖିସାରି ଶଙ୍କା ତାର ଗତିପଥରେ ବାଧା ସୃଷ୍ଟିକରେ । ତେଣୁ ତାର ଜୀବନରୁ ଅସଲ ଓ ଆଦମ ସୁଖ ଉଭେଇଯାଏ ।

ସୌନ୍ଦର୍ଯ୍ୟର ସୃଷ୍ଟି ପାଇଁ ଶାରୀରିକ ସୌନ୍ଦର୍ଯ୍ୟ ଯେ ଏକାନ୍ତ ଆବଶ୍ୟକ, ତାହା ନୁହେଁ । ଅନେକ ସ୍ଥଳରେ ଆମ୍ଭେମାନେ ଦେଖିଥାଉଁ ଯେ କୁତ୍ସିତ ଓ କଦାକାର ଲୋକ ନିଜର ସ୍ୱାଭାବିକ ଅଂଗଭଂଗୀରେ, ମଧୁର କଣ୍ଠସ୍ୱରରେ ପ୍ରାଣମନ ଆକୃଷ୍ଟ କରିଥାଏ । ଅନ୍ଧ ଗାୟକ, ଖଞ୍ଜ ବାଦକମାନେ ସ୍ୱାଭାବିକ ଭଂଗୀରେ ନିଜର କଳାବିଦ୍ୟା ପ୍ରଦର୍ଶନ କରି ସଚରାଚର ଆମ୍ଭମାନଙ୍କର ପ୍ରିୟପାତ୍ର ହୋଇଥାନ୍ତି । ରୂପହୀନ ଲୋକ ଜନନାୟକ ହୋଇ ଦେଶର ଅଗ୍ରଣୀ ହୋଇଥାଏ । କେହି ତାହାର ରୂପର ସମାଲୋଚନା କରନ୍ତି ନାହିଁ । ସମସ୍ତେ ତାର ସ୍ୱାଭାବିକ ପ୍ରାଣସ୍ପର୍ଶୀ ଭାଷାରେ ଉଦ୍‌ବୁଦ୍ଧ

ହୋଇ, ତାଙ୍କୁ ସମର୍ଥନ କରିଥାନ୍ତି । ଏହାର ମୂଳରେ ନିଃଶଙ୍କ ହୃଦୟ ଥାଏ । କିନ୍ତୁ ଶଙ୍କିତ ଲୋକ ନିଜର ପ୍ରତିଭା ସତ୍ତ୍ୱେ ଅନ୍ୟର ପ୍ରଶଂସାର ପାତ୍ର ହୋଇପାରେ ନାହିଁ ।

କେତେକ ସଂଗୀତଜ୍ଞ, ସଂଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ ସୁଦ୍ଧା, ଶଙ୍କାଗ୍ରସ୍ତ ହୋଇଥିଲେ, ପ୍ରଶଂସା ଓ ପ୍ରତିଷ୍ଠା ଲାଭ କରିପାରନ୍ତି ନାହିଁ । ଲୋକମାନଙ୍କ ସମ୍ମୁଖରେ ସେମାନେ ଗାଇ ବଜାଇ ପାରନ୍ତି ନାହିଁ । ଗାନକରିବା ବେଳକୁ ଶଙ୍କାରେ ସେମାନଙ୍କ କଣ୍ଠରୁଦ୍ଧ ହୁଏ, ବାଦ୍ୟ ବଜାଇବା ବେଳକୁ ଭୟରେ ଅଙ୍ଗୁଳି କମ୍ପିତ ହୁଏ । ତେଣୁ ସେମାନେ ପ୍ରଶଂସା ଲାଭକରିବା ପରିବର୍ତ୍ତେ ହାସ୍ୟାସ୍ପଦ ହୋଇଥାନ୍ତି ।

ମୋଟଉପରେ ଦେଖିବାକୁ ଗଲେ ଶଙ୍କା ଗୋଟିଏ ଘନକୃଷ୍ଣ ଆବରଣ ପରି । ଏହା ଆତ୍ମାର ଓ ଅନ୍ତରର ସ୍ୱାଭାବିକ ଜ୍ୟୋତି ଓ ସ୍ୱରୂପକୁ ଆବୃତ କରି ଗୋପନ ରଖେ । ତେଣୁ ଏହାର ଧ୍ୱଂସ-ସାଧନ ସର୍ବଥା ବିଧେୟ ।

( ସାତ )

# କ୍ଷଣ୍ଣା ଓ ବ୍ୟବସାୟ

ଜୀବନରେ ସକଳ ପ୍ରକାର ସୁଖଲାଭ ସମସ୍ତଙ୍କର ଚରମ ଲକ୍ଷ୍ୟ । ଏ ଲକ୍ଷ୍ୟ ସ୍ଥଳରେ ଉପନୀତ ହେବା କଠୋର ସାଧନା-ସାପେକ୍ଷ । ଅଦମ୍ୟ ମନୋବଳ, ଧୈର୍ଯ୍ୟ, ସାହସ, ଅଧ୍ୟବସାୟ ପ୍ରଭୃତି ଦିବ୍ୟ ଅସ୍ତ୍ରଗୁଡ଼ିକ ସାହାଯ୍ୟରେ ଜୀବନ ସଂଗ୍ରାମରେ ଜୟଲାଭ କରାଯାଏ । ଯାହାର ଏ ଅସ୍ତ୍ରଗୁଡ଼ି ନାହିଁ, ସେ ଅଚିରେ ଭୂତଳଶାୟୀ ହୁଏ । ଶଙ୍କାନ୍ୱିତଠାରେ ଏସବୁ ଦିବ୍ୟଅସ୍ତ୍ରର ଏକାନ୍ତ ଅଭାବ । ତେଣୁ ତା'ର ପରାଜୟ ସ୍ୱତଃସିଦ୍ଧ ।

ବୈଷୟିକ ଉନ୍ନତି ସକଳ ଉନ୍ନତିର ମୂଳାଧାର । ଅର୍ଥାଭାବରେ, ଅନ୍ନକଷ୍ଟରେ ଯନ୍ତ୍ରଣାମୟ ଜୀବନ ଯାପନ କରୁଥିବା ଲୋକ କୌଣସି ପ୍ରକାର ଉନ୍ନତି କରି ପାରେନାହିଁ । ଉଦର ଜ୍ୱାଳାରେ ଯନ୍ତ୍ରଣା ଭୋଗ କରୁଥିବା ବେଳେ ବୈଜ୍ଞାନିକ ଗବେଷଣା ସମ୍ଭବପର ହୁଏନାହିଁ । ନିର୍ଧନ ଦାତା ପରର ଅଭାବ ଦୂରକରି ପାରେ ନାହିଁ । ତେଣୁ ନିଜର ଆର୍ଥିକ ଉନ୍ନତି ବିଧାନ ସର୍ବାଦୌ

କର୍ତ୍ତବ୍ୟ । ଅର୍ଥୋପାର୍ଜନ ସମସ୍ତଙ୍କର କାମ୍ୟ, କିନ୍ତୁ ଏହା ଏତେ ସହଜସାଧ୍ୟ ନୁହେଁ । ନିଜର ବଣିକ୍‌ବୃତ୍ତି ଓ ବ୍ୟକ୍ତିତ୍ୱର ବିକାଶରୁ ଅର୍ଥ କିମ୍ବା ପ୍ରତିଷ୍ଠା ଲାଭ ସ୍ୱତଃ ସମ୍ଭବ ହୁଏ ନା । ବ୍ୟବହାରିକ ଜଗତର ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ବଡ଼ ତୀବ୍ର । ସେଥିରେ ନିଜର ଉତ୍କର୍ଷତା ଦେଖାଇବା ପାଇଁ କେତେଗୁଡ଼ିଏ ସୁଗୁଣ ଲୋଡ଼ା । ଏଥିପାଇଁ ବୁଦ୍ଧି, ବିଚକ୍ଷଣତା, ସାହସ, ଧୈର୍ଯ୍ୟ, ଅଧ୍ୟବସାୟ, ଅକ୍ଳାନ୍ତ ପରିଶ୍ରମ ପ୍ରଭୃତି କେତେଗୁଡ଼ିଏ ସୁଗୁଣର ଅତ୍ୟନ୍ତ ଆବଶ୍ୟକ । ଶଙ୍କାଶୀଳର ଏସବୁ ସୁଗୁଣ ନଥାଏ । ତେଣୁ ତା'ର ଆର୍ଥିକ ଉନ୍ନତି ହୋଇପାରେ ନା' ଓ ତାହା ସଙ୍ଗେ ସଙ୍ଗେ ଅନ୍ୟ ସମସ୍ତ ପ୍ରକାର ଉନ୍ନତି ମଧ୍ୟ ଅସମ୍ଭବ ହୋଇ ପଡ଼େ ।

ସୌଭାଗ୍ୟରୁ ଯଦି କୌଣସି ଶଙ୍କିତମନା ବିପୁଳ ପୈତୃକ ସମ୍ପତ୍ତିର ଅଧିକାରୀ ହୁଏ, ତେବେ ସେ ତାହାର ରକ୍ଷଣାବେକ୍ଷଣ କରିପାରେ ନାହିଁ । ରାଜାଧିରାଜ ହେଲେ ସୁଦ୍ଧା ନିଜର ଧନ, ବିଭବ ଓ ଐଶ୍ୱର୍ଯ୍ୟ ରକ୍ଷା କରିବା ନିମନ୍ତେ ଯତ୍ନ କରିବାକୁ ହେବ । ସିଂହାସନ ଲାଭାଭିଳାଷୀ ଷଡ଼ଯନ୍ତ୍ରୀ ଲୋକଙ୍କୁ ଦୂର କରିବାକୁ ହେବ, ନଚେତ୍ ସେମାନେ ସୁବିଧାବେଳେ ସିଂହାସନ ଅଧିକାର କରି ବସିବେ । ପ୍ରଜାରଞ୍ଜନ କରିବାକୁ ହେବ, ନ ହେଲେ ବିଦ୍ରୋହ ହେବ । ବହିଃଶତ୍ରୁର ପ୍ରତିରୋଧ କରିବାକୁ ହେବ, ନଚେତ୍ ଦେଶ ବିପନ୍ନ ହେବ ।

ଏହିପରି ନାନା ଦିଗକୁ ଦୃଷ୍ଟିଦେଇ ଦକ୍ଷତାର ସହିତ ନିଜର ଆସନ ଦୃଢ଼ ନ କଲେ, ରାଜାଙ୍କୁ ମଧ୍ୟ ପଥର ଭିକାରୀ ହେବାକୁ ପଡ଼ିବ ।

ସେହିପରି ଧନୀଲୋକ ନିଜର ସମ୍ପତ୍ତିର ତତ୍ତ୍ୱାବଧାନ ନ କଲେ ତା'ର ଧନ ଓ ବିଭବ ଚାଲିଯାଏ । ଚତୁର ଓ କୁଟିଳ

ଲୋକମାନେ ନାନା ଉପାୟରେ ତା'ର ଧନ ଶୋଷଣ କରନେଇ ତାକୁ ନିଃସ୍ୱ କରି ଦିଅନ୍ତି । କିନ୍ତୁ ଶଙ୍କାଯୁକ୍ତ ଲୋକ ଆପଣାର ସମ୍ପତ୍ତି ରକ୍ଷଣାବେକ୍ଷଣ କରି ପାରେ ନାହିଁ । ସେ ନିଜେ ସମ୍ପତ୍ତି ଅର୍ଜନ କରିବାକୁ ସମର୍ଥ ନୁହେଁ । ଅଧିକନ୍ତୁ ପୈତୃକ ସମ୍ପତ୍ତି ଅଧିକାରୀ ହୋଇଥିଲେ, ଅଚିରେ ସେ ସମସ୍ତ ହରାଇ ବସେ । ଶଙ୍କା ଓ ଭୟ ତା'ର ଏ ଦୁର୍ଦ୍ଦଶାର କାରଣ । ଏହି ଶଙ୍କା ଯୋଗୁଁ ସେ ଲୋକମାନଙ୍କ ସମ୍ମୁଖରେ ପଦେ କଥା କହିବାକୁ ସାହସୀ ହୁଏନାହିଁ । ନିଜର ନ୍ୟାଯ୍ୟସଙ୍ଗତ ଦାବୀ, ଓ ଅଧିକାର ସାବ୍ୟସ୍ତ କରିବାକୁ ହେଲେ, ଯୁକ୍ତିତର୍କ, ମାଲିମୋକଦ୍ଦମା, ନ୍ୟାୟନିଶାପ କରିବାକୁ ପଡ଼େ । କିନ୍ତୁ ଶଙ୍କାକୁଳ ଲୋକ ଏ ସବୁକୁ ଭୟ କରେ । ତେଣୁ ଭୟରେ ଅନିଚ୍ଛାସତ୍ତ୍ୱେ ମୁଣ୍ଡ ନୁଆଇଁ ବରଂ ନିଜର ଦାବି ପରିତ୍ୟାଗ କରେ, କିନ୍ତୁ ପ୍ରତିବାଦ କରିବାକୁ ସାହସୀ ହୁଏ ନାହିଁ । ଲେଖକଙ୍କର ପ୍ରତ୍ୟକ୍ଷୀଭୂତ ନିମ୍ନଘଟନାଟିରୁ ଏକଥା କପରି ସମ୍ଭବ-ପର ତାହା ପରିଷ୍କାର ବୁଝାଯିବ ।

ଜଣେ ଧନୀ ଗୃହସ୍ଥଙ୍କର ଦୁଇଟି ପୁଅ ଥିଲେ । ଦୁହେଁ ଅର୍ଦ୍ଧଶିକ୍ଷିତ । ଜ୍ୟେଷ୍ଠ ଚତୁର, କନିଷ୍ଠ ବୁଦ୍ଧିମାନ ହେଲେହେଁ ଶଙ୍କାନ୍ୱିତ । ପିତାଙ୍କ ଅନ୍ତେ ବଡ଼ଭାଇ ସମୁଦାୟ ସମ୍ପତ୍ତି ଅଧିକାର କରିନେଲେ । କନିଷ୍ଠକୁ କିଛି ମାତ୍ର ଦେଲେନାହିଁ । ବଡ଼ଭାଇଙ୍କ ବିରୁଦ୍ଧରେ ଆଇନ ଅଦାଲତର ଆଶ୍ରୟ ନେଇ ନିଜର ନ୍ୟାଯ୍ୟ ଅଂଶ ଲାଭକରିବା ନିମନ୍ତେ ଲୋକେ କନିଷ୍ଠକୁ ଉପଦେଶ ଦେଲେ । ସେ କିନ୍ତୁ କୌଣସିମତେ ସମ୍ମତ ହେଲେନାହିଁ । ଶେଷରେ କୁଟପ୍ରକୃତିର ଲୋକମାନେ କିଛି ଅର୍ଥ ନେଇ ସମ୍ପତ୍ତି ହସ୍ତାନ୍ତର କରିଦେବାକୁ ତାଙ୍କୁ ପ୍ରବର୍ତ୍ତାଇଲେ । ଏଥିରେ ସେ କହିଲେ ଯେ, "ମତେ ଯଦି ହାକିମ ହୁକୁମାଙ୍କ ପାଖକୁ ଯିବାକୁ ନ ହେବ, ତାହାହେଲେ ମୁଁ

ସମ୍ପତ୍ତି ହସ୍ତାନ୍ତର କରିଦେବ ।" ଏଥିରୁ ବୁଝାଯାଉଛି ଯେ କେବଳ ବସ୍ତୁଗଳସ୍ୱକୁ ଯିବା ଭୟରେ କାତର ହୋଇ ସେ ସମ୍ପତ୍ତି ତ୍ୟାଗ କରିଥିଲେ । ଭ୍ରାତୃଭକ୍ତି ବା ଭ୍ରାତୃ ପ୍ରୀତି ତାଙ୍କର ନ ଥିଲା କିମ୍ବା ଅନ୍ୟ କୌଣସି ଉଚ୍ଚ ଆଦର୍ଶ ରଖି ସେ ସ୍ୱୀୟ ସମ୍ପତ୍ତି ତ୍ୟାଗ କରି-ନ ଥିଲେ ।

ସାଧାରଣତଃ ଏପରି ସରଳ ଓ ନିର୍ବୋଧ ଭାବେ ସର୍ବସ୍ୱାନ୍ତ ନ ହେଲେ ସୁଦ୍ଧା ଶଙ୍କାଯୁକ୍ତ ଲୋକର ଜୀବନରେ ପ୍ରକାରାନ୍ତରେ ଏହୁ ଜାତୀୟ ଘଟନା ବିରଳ ନୁହେଁ ।

ଆଜି ମଧ୍ୟ ନିଜର ଅବ୍ୟବସ୍ଥିତ ଦୁର୍ବଳ ମନ ଯୋଗେ ଶଙ୍କାଗ୍ରସ୍ତ ଲୋକ ଖଳଲୋକର କୁଟନୀତି ଓ କୁଅଭିସନ୍ଧିରେ ପଡ଼ି ଅନେକ ସମୟରେ ସର୍ବସ୍ୱାନ୍ତ ହୋଇଥାନ୍ତି । ଅଭିଜ୍ଞତାହୀନ ଶଙ୍କିତମନା ଧନୀ ଯୁବକଙ୍କୁ ଏମାନେ ନିଜର କୂଟବୁଦ୍ଧିରେ ବଶୀଭୂତ କରି ମାଦକ ସେବନ, ଦ୍ୟୁତକ୍ରୀଡ଼ା, ବେଶ୍ୟା ଗୃହଗମନ ପ୍ରଭୃତି କୁକର୍ମରେ ପ୍ରବୃତ୍ତ କରାଇ ତାଙ୍କର ଅର୍ଥାଭାବ ସୃଷ୍ଟି କରନ୍ତି । ଏ ଅଭାବ ବେଳେ ନିଜେ ବନ୍ଧୁ ସାଜି କଷ୍ଟମର୍ଷ୍ଟଭାବେ ଅର୍ଥସାହାଯ୍ୟ ଦେଇ ପରିଶେଷରେ ଋଣାନ୍ତ କରି ଋଣପରିଶୋଧ ଛଳରେ ତାହାଙ୍କର ସମ୍ପତ୍ତି ଅପହରଣ କରନ୍ତି । ଏପରି ଘଟନା ନିତ୍ୟ ପ୍ରତ୍ୟକ୍ଷୀଭୂତ ।

ବ୍ୟବହାରିକ ଜଗତରେ ସ୍ୱୀୟ ବୁଦ୍ଧିବଳରେ ଆର୍ଥିକ ଅବସ୍ଥାର ଉନ୍ନତ କରିବା ଶଙ୍କାକୁଳ ଲୋକ ପକ୍ଷେ ସମ୍ଭବପର ହୁଏନା' । ଶଙ୍କାଗ୍ରସ୍ତର ମନ ଦୁର୍ବଳ; ଅଧ୍ୟବସାୟ, ଧୈର୍ଯ୍ୟ ଓ ସାହସ ତା'ର ନ ଥାଏ । କୌଣସି କାର୍ଯ୍ୟ ଆରମ୍ଭ କରି ଶେଷକରିବା ପର୍ଯ୍ୟନ୍ତ ତାର ଧୈର୍ଯ୍ୟ ରହେନାହିଁ । ପୁଣି ପ୍ରଥମ ଉଦ୍ୟମରେ ବିଫଳ ହେଲେ, ହତାଶାରେ ତା'ର ଅନ୍ତର ଭରିଯାଏ । ସେ ସକଳ ଆଶା ଭରସା

ତ୍ୟାଗ କରି ନିରୁଦ୍ଧାମ ଭାବେ ନିଜର ଵିଫଳତାକୁ ଅତିରଞ୍ଜିତ କରି ଦୁଃଖରେ କାଳାତିପାତ କରେ ।

ଲୋକମାନଙ୍କ ଆଗରେ ମୁହଁ ଖୋଲି କଥା କହିବା, ଶଙ୍କିତ ପକ୍ଷେ ଦୁଃସାଧ୍ୟ ଓ ଅସୁବିଧାଜନକ । ଏସବୁ ଝଞ୍ଜାଳରୁ ଦୂରରେ ରହିବାକୁ ସେ ଯଥାସାଧ୍ୟ ଚେଷ୍ଟାକରେ । ଗରି ଦାରିଦ୍ର୍ୟକୁ ବରଣ କରିବାକୁ ସେ କୁଣ୍ଠିତ ହୁଏନାହିଁ, କିନ୍ତୁ ଏପରି ଭାବେ ସର୍ବସାଧାରଣରେ ଉପସ୍ଥିତ ହେବାକୁ ସେ ଭୟକରେ । ଏହି କାରଣରୁ ସେ କୌଣସି ବ୍ୟବସାୟ ବାଣିଜ୍ୟରେ ସଫଳ ହୁଏ ନାହିଁ । ସାମାଜିକ ବା ରାଜନୈତିକ କର୍ମ, ଅଭିନ ବା ଶିକ୍ଷା, ବ୍ୟବସାୟ ପ୍ରଭୃତି ଗ୍ରହଣ କରିବା ତା' ପକ୍ଷେ ଅସମ୍ଭବ । କୃଷି ବାଣିଜ୍ୟ ପ୍ରଭୃତି ମଧ୍ୟ ତା'ଦ୍ୱାରା ସମ୍ଭବପର ହୁଏନାହିଁ । କାରଣ ପ୍ରତ୍ୟେକ ବ୍ୟବସାୟରେ ଲୋକମାନଙ୍କର ସମ୍ମୁଖକୁ ଆସିବାକୁ ପଡ଼ିବ, ସଙ୍ଘର୍ଷ ଦେଇ ଗତିକରିବାକୁ ହେବ ଓ ସର୍ବସାଧାରଣରେ ନିଜର ଉତ୍କର୍ଷତା ପ୍ରତିପାଦନ କରିବାକୁ ହେବ । ଏସବୁ କରିବାକୁ ସେ ସଂପୂର୍ଣ୍ଣ ଅକ୍ଷମ ।

ଗାଉଁଲି ଲୋକେ କହିଥାନ୍ତି "କଥା ପୋଷ୍ଟି ପାରେ ଯିଏ, ପଣ୍ଡିତ ଗଙ୍ଗୁଡ଼ି ବଡେ ସିଏ ।" ଅର୍ଥାତ୍ ଯେ କୁହାବୋଲା କରିପାରେ ଯାହାର ବାକ୍‌ପଟୁତା ଅଛି, ଯେ ବିଚକ୍ଷଣ, ପଣ୍ଡିତଗଣ୍ଡ ହେଲେ ସୁଦ୍ଧା, ସେ ବାଗ୍ମିତାରେ ତା'ର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ତାହାକୁ ବିଜୟ କରିପାରେ । କିନ୍ତୁ ଶଙ୍କାଗ୍ରସ୍ତ ଲୋକ ସମ୍ମୁଖରେ କଥା କହିବାକୁ ଭୟ କରେ, ସେ ବୋହିଭାଲୁର ସୁଦ୍ଧା ବିଜୟ କରିପାରେ ନାହିଁ ।

ବାସ୍ତବ ଜଗତରେ ଏ ଉକ୍ତିର ଯଥାର୍ଥତା ସମ୍ବନ୍ଧରେ ଅଣୁମାତ୍ର ସନ୍ଦେହ ନାହିଁ । ପ୍ରତ୍ୟେକ ବୃତ୍ତି ଓ ବ୍ୟବସାୟରେ ଏ

ସତ୍ୟ ପ୍ରତୀତ୍ୟ । ଏଣୁ ଶଙ୍କାନ୍ୱିତ ଲୋକ ବ୍ୟବହାରିକ ଜଗତରେ ସକଳ ବ୍ୟବସାୟରେ, ସକଳ କ୍ଷେତ୍ରରେ ତା'ର ଉଦ୍ୟମ ବିଫଳ ହେବାର ଦେଖେ । ତା'ର ଶଙ୍କା, ତା'ର ଜୀବନ ଓ ସଫଳତା ମଧ୍ୟରେ ଦୁର୍ଭେଦ୍ୟ ଶୈଳରୂପେ ଦଣ୍ଡାୟମାନ ହୁଏ । ସଫଳତାର ସ୍ପଷ୍ଟ ଧାରଣ, କର୍ମକୁଶଳତା, ପ୍ରେରଣା, ଅଧ୍ୟବସାୟ ଓ ସାହସିକତା ବିନା ସମ୍ଭବପର ନୁହେଁ । ଏସବୁ ଗୁଣ ଶଙ୍କାଶୀଳ ଠାରେ ଏକାନ୍ତ ବିରଳ । ତା'ର ଆତ୍ମପ୍ରତ୍ୟୟ ଓ ଆତ୍ମବିଶ୍ୱାସ ଥାଏନା, ତେଣୁ ଅନ୍ୟଲୋକର ତା' ପ୍ରତି ବିଶ୍ୱାସ ଜାତହେବା ଅସ୍ୱାଭାବିକ ।

ଜଣେ ପାନ୍ଥ ସାଙ୍ଗରେ ପାଥେୟ ନ ଧରି ଯାତ୍ରା ଆରମ୍ଭ କଲେ ଲକ୍ଷ୍ୟସ୍ଥଳରେ ଉପନୀତ ହେବା କଷ୍ଟକର ହୁଏ । ହୁଏତ ସେ ଯାତ୍ରା ପରିତ୍ୟାଗ କରି ବାହୁଡ଼ ଆସେ, ନଚେତ୍ ପାଥେୟ ଅଭାବରୁ ପଥମଧ୍ୟରେ କ୍ଷୁଧା ତୃଷାରେ ଦୁଃଖ ଭୋଗ କରେ । ସେହିପରି ଶଙ୍କିତମନା, ସଂସାର ପଥରେ ସାହସ, ଧୈର୍ଯ୍ୟ, ମନୋବଳ, ଅଧ୍ୟବସାୟ ପ୍ରଭୃତି ପାଥେୟ ସଙ୍ଗରେ ନଧରି ଜୀବନ-ଯାତ୍ରା ଆରମ୍ଭ କରେ । ତେଣୁ ଏ ଯାତ୍ରାରେ ସେ ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହୋଇନପାରି ପଥ ମଧ୍ୟରେ କ୍ଷୁଧା ତୃଷାରେ ପ୍ରାଣତ୍ୟାଗ କରେ ।

ଶଙ୍କାଯୁକ୍ତ ଲୋକ ନିଜର ମନୋଭାବ ପ୍ରକାଶ କରିପାରେ ନାହିଁ । ଘଟନା ଚକ୍ରରେ ପଡ଼ି ନିଜର ମନୋଭାବ ପ୍ରକାଶ କରିବାକୁ ବାଧ୍ୟହେଲେ, ସେ ଭୀତତ୍ରସ୍ତ ହୋଇପଡ଼େ । କମ୍ପିତ କଣ୍ଠରେ, ଖଣ୍ଡ ଖଣ୍ଡ ବାକ୍ୟରେ ଯାହା ପ୍ରକାଶ କରେ, ତାହା ତା'ର ମନର ଭାବ ପ୍ରକାଶ ନ କରି ସମୟ ସମୟରେ ବିପରୀତ ଅର୍ଥ ପ୍ରକାଶ କରିଥାଏ । ଏଥିଯୋଗେ କେତେକ ନିରପରାଧ ଶଙ୍କାଗ୍ରସ୍ତ

ଲୋକ ଅଇନ ଅଦାଲତରେ ଦଣ୍ଡିତ ହେବାକଥା ଲେଖକଙ୍କୁ ଜଣାଅଛି । "ଥରେ ଗୋଟିଏ ଲୋକର ସ୍ତ୍ରୀ ବିଷପାନ କରି ଅତ୍ମହତ୍ୟା କଲା । ପୋଲିସ ତଦନ୍ତ ବେଳେ ତା'ର ସ୍ୱାମୀ ଏପରି ଖଣ୍ଡ ଖଣ୍ଡ ବାକ୍ୟରେ ଜବାବ ଦେଲା ଯେ ସେ ବିଷଦେଇ ତା'ର ସ୍ତ୍ରୀକୁ ମାରିଛି ବୋଲି ଅର୍ଥ ପ୍ରକାଶ ପାଇଲା । ଫଳରେ ସେ ନରହତ୍ୟା ଅପରାଧରେ ଅଭିଯୁକ୍ତ ହୋଇଥିଲା ।" ଏଥିରୁ ଶଙ୍କା ଯୋଗେ ଲୋକେ କି ଦୁର୍ଦ୍ଦଶା ଭୋଗକରନ୍ତି, ତାହା ସହଜରେ ଅନୁମେୟ ।

ବ୍ୟବସାୟ କ୍ଷେତ୍ରରେ କୌଣସି ବିଷୟରେ ବାଧ୍ୟହୋଇ ତର୍କ ବିତର୍କ କରିବାକୁ ହେଲେ, ଶଙ୍କାଗ୍ରସ୍ତ ଲୋକ କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼େ । ସେ ତା'ର ମନମଧ୍ୟରେ ଭାବି ଠିକ୍ କରିଥିବା ସାର ଯୁକ୍ତିଗୁଡ଼ିକ ଭୁଲିଯାଏ; ଏପରିକି ସମସ୍ତ ସମୟରେ ଯାହା ଏକ ପ୍ରକାର କଣ୍ଠସ୍ଥ କରି ରଖିଥାଏ, ସେସବୁ ତା'ର ମନରୁ ବିସ୍ମୃତ ହୁଏ । ସେ ଖଣ୍ଡିତ ବାକ୍ୟରେ ଏଣୁତେଣୁ ଅସାର କଥା କହିବସେ । ତେଣୁ ଅପଣାର ମତ ସାବ୍ୟସ୍ତ କରି ନପାରି ପରାଜିତ ହୁଏ ଓ ତଦ୍ଦ୍ୱାରା ଅର୍ଥିକ କ୍ଷତି ସହ୍ୟକରେ ।

ସମସ୍ତ ସମୟରେ ନିଜଠାରୁ ନିକୃଷ୍ଟତର ଲୋକମାନଙ୍କ ପାଖରେ ଅନ୍ୟାୟ ବିରୁଦ୍ଧରେ ସେ ପ୍ରତିବାଦ କରିପାରେ ନାହିଁ । ତା'ର କୃଷି କ୍ଷେତ୍ରରେ କାର୍ଯ୍ୟକରୁଥିବା ଶ୍ରମଜୀବୀମାନଙ୍କୁ ସେ ଉଚିତ ମଜୁରି ଦିଏ । ସେଥିରେ ସେମାନେ ସନ୍ତୁଷ୍ଟ ନ ହୋଇ ଅଧିକ ଦାବିକଲେ, ସେ ଶଙ୍କାବଶତଃ ସେମାନଙ୍କୁ ତାଙ୍କର ଦାବି ଅନ୍ୟାୟ ବୋଲି ବୁଝାଇ ପାରେନାହିଁ; ନୀରବରେ ସେମାନଙ୍କର ଅନ୍ୟାୟ ଦାବି ପୂରଣ କରିଥାଏ ।

ଶଙ୍କିତମନାର ଆଉ ଗୋଟିଏ ପ୍ରଧାନ ଦୋଷ ଦୀର୍ଘସୂତ୍ରିତା । ନିଜର ଅବ୍ୟବସ୍ଥିତ ଦୁର୍ବଳ ମନଯୋଗୁଁ ସେ କୌଣସି ବିଷୟରେ ସ୍ଥିର ସିଦ୍ଧାନ୍ତ କରିପାରେ ନାହିଁ । ପ୍ରତ୍ୟେକ ବିଷୟରେ ତା'ର ମନ ମଧ୍ୟରେ ଦ୍ୱିଧାଭାବ ଜାଗ୍ରତ ହୁଏ । ପ୍ରତ୍ୟେକ ବିଷୟରେ ସମ୍ପୂର୍ଣ୍ଣ ବିପରୀତ ଦୁଇଟି ମତ ତା'ର ମନକୁ ଆସି ଦ୍ୱନ୍ଦ୍ୱ ସୃଷ୍ଟି କରେ । ସେ ନିଜମଧ୍ୟରେ ଦୁଇଟା ଲୋକର ଅସ୍ତିତ୍ୱ ଅନୁଭବ କରେ । କୌଣସି ବିଷୟରେ ନିରପେକ୍ଷ ଭାବେ ବିଚାର କରିବାକୁ ତା'ର ଶକ୍ତି ନଥାଏ । ସେ ସବୁବେଳେ ଏକଦେଶଦର୍ଶୀ । ପୁଣି ମନର ଦୁର୍ବଳତା ଯୋଗୁଁ ଏଭଳି ଏକଦେଶୀ ମତରେ ମଧ୍ୟ ସେ ଦୃଢ଼ ନୁହେଁ । ଏଥିପାଇଁ ପ୍ରତ୍ୟେକ ବିଷୟର ସିଦ୍ଧାନ୍ତ ସେ ଭବିଷ୍ୟତ୍‌କୁ ରଖିଦିଏ । ତା'ର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନଥାଏ । ସେ ଘଟଣାର ଦାସ । ଘଟଣା ସ୍ରୋତରେ ସେ ଭାସି ଭାସି ଯାଉଥାଏ । କୌଣସି ଘଟଣାର ପ୍ରତିହତ କରିବାକୁ ଚେଷ୍ଟା କରିବା ନିମନ୍ତେ ତା'ର ସାହସ ଓ ମନୋବଳ ନ ଥାଏ । ହଠାତ୍ କୌଣସି ବିଷୟରେ ସିଦ୍ଧାନ୍ତ କରିବାକୁ ପଡ଼ିଲେ, ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼େ । ଅଳ୍ପମଧ୍ୟ ଦୀର୍ଘସୂତ୍ରିତା ଯୋଗୁ ସେ ଅନେକ ସୁବିଧା ଓ ସୁଯୋଗ ହରାଇ ବସେ । ତେଣୁ ତା'ର ଅବସ୍ଥାର କୌଣସି ଉନ୍ନତି କରିପାରେ ନାହିଁ ।

ଶଙ୍କାଶୀଳ ସାମାନ୍ୟ ପ୍ରଶଂସାରେ ଉତ୍‌ଫୁଲ୍ଲ ହୋଇପଡ଼େ । ସେହିପରି ସାମାନ୍ୟ ଅପମାନରେ ସେ କ୍ରୋଧରେ ଜଳିଉଠେ । ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆପଣାର ପ୍ରବୃତ୍ତିକୁ ଅଯୁକ୍ତ ଓ ସଂଯତ କରି ରଖିବା ତା'ପକ୍ଷରେ ସମ୍ଭବପର ହୁଏ ନାହିଁ । ଏହି କାରଣରୁ ତା'ର ବନ୍ଧୁମାନେ ତା'ର ବ୍ୟବହାରରେ କ୍ଷୁବ୍ଧହୋଇ ତାକୁ ତ୍ୟାଗ କରନ୍ତି । ବ୍ୟବହାରିକ ଜଗତରେ କେତେକ ପରିମାଣରେ

ସହ୍ୟଶକ୍ତି ହିଁ ଏକାନ୍ତ ଅବଶ୍ୟକ । ଶଙ୍କାଲୁ ନରର ଏ ସହ୍ୟଶକ୍ତି ଏକାନ୍ତ ଅବଶ୍ୟକ । ଶଙ୍କାଲୁ ନରର ଏ ସହ୍ୟଶକ୍ତି ନଥାଏ । ସେଥିପାଇଁ ବନ୍ଧୁଶୂନ୍ୟ ହୋଇ ଦୁଃଖାନଳରେ ଜଳିଯାଇ ସେ ଏକାକୀ କାଳାତିପାତ କରେ ।

ଅନେକ ସମୟରେ ଶଙ୍କାଯୋଗୁ ସେ କେତେକ ଅବଶ୍ୟ-କରଣୀୟ କର୍ମ ସମ୍ପାଦନ କରି ପାରେନାହିଁ । ଏପରି ଗୁରୁତର ଭୁଲ୍ ଯୋଗେ ତାକୁ ଉଦର ଜ୍ୱାଳା ସହ୍ୟ କରିବାକୁ ହୁଏ । ଜଣେ ଲୋକ ଉଚ୍ଚାଭିଳାଷ ତ୍ୟାଗ କରିପାରେ, ଅପଣାର ଉଚ୍ଚାକାଙ୍କ୍ଷା ପୂରଣ କରିବାକୁ ଚେଷ୍ଟାକରି ନପାରେ, କିନ୍ତୁ ଜୀବନ ଧାରଣ ପାଇଁ ଯାହା ନିତାନ୍ତ ଅବଶ୍ୟକ, ସେତକ ନ କଲେ ଚଳିବ କିପରି ? ଅନ୍ନର ସଂସ୍ଥାନ ନ କଲେ ସେ ପ୍ରାଣ ଧାରଣ କରିବ କିପରି ? କିନ୍ତୁ ଶଙ୍କାଗ୍ରସ୍ତ ଲୋକ ଶଙ୍କାବଶତଃ ସମସ୍ତ ସମୟରେ ଜୀବନ ଧାରଣ ପାଇଁ ଯାହା କରିବା ଏକାନ୍ତ ଅବଶ୍ୟକ, ତାହା ମଧ୍ୟ କରି ପାରେନାହିଁ । ତେଣୁ 'ହା ଅନ୍ନ' 'ହା ଅନ୍ନ' କହିକହି ଲୋକ-ଲୋଚନ-ଅଗୋଚରରେ ସେ ଜୀବନ ବିସର୍ଜନ କରିଥାଏ ।

"ଯୋର ଯା'ର, ମୁଲକ ତା'ର" । ଏ ଉକ୍ତି ନିହାତି ସତ୍ୟ ସବୁ ଯୁଗରେ, ସବୁ କ୍ଷେତ୍ରରେ ସକ୍ରିୟ । ବଳିଷ୍ଠମନା ବୁଦ୍ଧିମାନ୍ ଲୋକ ଜୟଯୁକ୍ତ ହୁଏ । ଦୁର୍ବଳ ଲୋକର ସ୍କନ୍ଧରେ ଜୟଲକ୍ଷ୍ମୀ ବିରାଜମାନ କରନ୍ତି ନାହିଁ । ବାସ୍ତବ ଜଗତର ତୀବ୍ର ପ୍ରତିଯୋଗିତାରେ ଦୁର୍ବଳ ଲୋକର ସ୍ଥାନ ନାହିଁ । ତେଣୁ ଶଙ୍କାଗ୍ରସ୍ତ ନିଜର ଶଙ୍କାଜନିତ ଦୁର୍ବଳତା ଯୋଗୁ ବାସ୍ତବ ଜଗତର ପ୍ରତିଯୋଗିତାରେ ବାର ବାର ପରାଜିତ ହୁଏ । ସେ ହାହାକାରର

ଅନ୍ଧକାର ଗହ୍ୱରରେ, ବିଫଳତାର ଗୁଳ୍ମ କଣ୍ଠାଷରେ ମୃତ୍ୟୁକୁ ବରଣ କରେ ।

ଏଥିପାଇଁ ହୃଦୟର ଶଙ୍କା ଦୂରକରି ବଳିଷ୍ଠମନା ହେବାକୁ ଯତ୍ନ କରିବା ପ୍ରତ୍ୟେକ ଲୋକର କର୍ତ୍ତବ୍ୟ ।

( ଆଠ )

# ନିଃଶଙ୍କ ହୃଦୟର ଉତ୍କର୍ଷତା

ସାଧାରଣ ଲୋକ ଚକ୍ଷୁରେ କେତେକ ଦୋଷ ଓ ଗୁଣର ସୀମାରେଖା ଏତେ ଅସ୍ପଷ୍ଟ ଯେ ଲୋକେ ଭ୍ରାନ୍ତିରେ ଗୁଣକୁ ଦୋଷ ଓ ଦୋଷକୁ ଗୁଣ ଭାବେ ସମୟ ସମୟରେ ଗ୍ରହଣ କରିଥାନ୍ତି । ଆତ୍ମ-ପ୍ରତ୍ୟୟ ଓ ଅହଙ୍କାର, ବିନମ୍ରତା ଓ ଲଜ୍ଜାଶୀଳତା, ମିତବ୍ୟୟିତା ଓ କୃପଣତା, ସ୍ପଷ୍ଟବାଦିତା ଓ ବାଚାଳତା, ସାହସିକତା ଓ ଦୁଃସାହସିକତା ପ୍ରଭୃତି ଅନେକ ଗୁଣ ଓ ଦୋଷ ମଧ୍ୟରେ ପ୍ରଭେଦ ଲୋକେ ବେଳେବେଳେ ବୁଝିପାରନ୍ତିନାହିଁ । ସେହିପରି ନିଃଶଙ୍କତା ଓ ଦାମ୍ଭିକତା ମଧ୍ୟରେ ଥିବା ପାର୍ଥକ୍ୟକୁ ଲୋକେ ବେଳେବେଳେ ହୃଦୟଙ୍ଗମ କରି ପାରନ୍ତିନାହିଁ ।

ନିଃଶଙ୍କତା ଗୋଟିଏ ସୁଗୁଣ । କିନ୍ତୁ ଦାମ୍ଭିକତା ଗୋଟିଏ ଅମାର୍ଜନୀୟ ଦୋଷ । ନିଃଶଙ୍କତା ଲକ୍ଷ୍ୟ ଲାଭରେ ମନୁଷ୍ୟକୁ ସାହାଯ୍ୟ କରି ତା'ର ପ୍ରତିଷ୍ଠା ସ୍ଥାପନ କରେ; ଦାମ୍ଭିକତା ତା'ର

ସଫଳତାର କାରଣ ହୁଏ । ବଳିଷ୍ଠ ମନରୁ ନିଃଶଙ୍କତାର ଜନ୍ମ । ଏକ ଦେଶ ଦର୍ଶୀ ଦୁର୍ବଳ ମନରୁ ଦାମ୍ଭିକତାର ଉତ୍ପତ୍ତି । ମୂଳତଃ ଗୋଟିଏ ସ୍ପୃହଣୀୟ ସୁଗୁଣ, ଅପରଟି ଅବାଞ୍ଛନୀୟ ଦୋଷ ।

ପ୍ରବଳ ଇଚ୍ଛାଶକ୍ତି ଓ ଉତ୍ସାହ ନିଃଶଙ୍କତାର ସହଚର । ଏ ଦୁଇଟି ଗୁଣର ମଧୁର ସମନ୍ୱୟରୁ ପ୍ରକୃତରେ ନିଃଶଙ୍କତାର ଉତ୍ପତ୍ତି । ଏ ଦୁଇଟି ଗୁଣରୁ ଗୋଟିକର ଅଭାବ ହେଲେ ନିଃଶଙ୍କତାର କଳ୍ପନା କରିଯାଇ ପାରେ ନା । କୌଣସି ବିଷୟରେ ଲକ୍ଷ୍ୟ ସ୍ଥିର କରିବାକୁ ଇଚ୍ଛା ଶକ୍ତି ମନରେ ବଳ ଓ ପ୍ରେରଣା ଦିଏ, ଉକ୍ତ ଲକ୍ଷ୍ୟ ଲାଭ ପଥରେ ଗତିକରିବାକୁ ଉତ୍ସାହ ଦେଇ ମନୁଷ୍ୟକୁ କର୍ମ ତତ୍ପର କରେ । ତେଣୁ ସେ କୃତସଙ୍କଳ୍ପ ମନରେ ଅଧ୍ୟବସାୟ ସହକାରେ ନିଃଶଙ୍କ ଚିତ୍ତରେ ସମସ୍ତ ବାଧାବିଘ୍ନ ଲଙ୍ଘନ କରି ଲକ୍ଷ୍ୟ ସ୍ଥଳରେ ଉପନୀତ ହୁଏ । ଶଙ୍କାଶୂନ୍ୟ ଲୋକ ସର୍ବଦା ସାହସୀ ହୋଇଥାଏ । ସାହସିକତା ଓ ନିଃଶଙ୍କତା ଯମଜ ଭଗିନୀ ।

ଉଚ୍ଚାକାଙ୍କ୍ଷା ନିଃଶଙ୍କ ଲୋକର ଚିର ସହଚର । ଉଚ୍ଚାକାଙ୍କ୍ଷାକୁ କେତେକ ଲୋକ ଦୋଷ ଦୁର୍ଗୁଣ ମଧ୍ୟରେ ଗଣନା କରନ୍ତି । କିନ୍ତୁ ଏହା ସେମାନଙ୍କର ଭ୍ରାନ୍ତି । ଉଚ୍ଚାଭିଳାଷ ନଥିଲେ ଜୀବନରେ ଉନ୍ନତି କରିବା ଅସମ୍ଭବ । ଉଚ୍ଚାଭିଳାଷ ପ୍ରଗତି ମାର୍ଗର ପାଥେୟ । ଏହା ହୃଦୟରେ ଅଦମ୍ୟ ଉତ୍ସାହ ସୃଷ୍ଟି କରି କର୍ମତତ୍ପର ହେବାକୁ ମନୁଷ୍ୟକୁ ଉଦ୍‌ବେଗ ଓ ଉଦ୍ଦୀପନା ଦିଏ । ଯେପରି ପୁଷ୍ପର ମଧୁର ମହକରେ ଆକୃଷ୍ଟ ହୋଇ ମଧୁପଗଣ ପୁଷ୍ପ ଅଭିମୁଖରେ ଉଡ଼ିଯାଆନ୍ତି, ସେହିପରି ଉଚ୍ଚାକାଙ୍କ୍ଷାର ମଧୁର ମହକ ବ୍ୟକ୍ତିର ମନକୁ ଉଚ୍ଚାଟ କଲେ, ତା'ର ପ୍ରାଣ ଉଦ୍‌ବୁଦ୍ଧ ହୋଇ ଉଠେ । ସେ ନିଜର ଆକାଙ୍କ୍ଷା ପୂରଣ କରିବାକୁ ଅଦମ୍ୟ

ଉତ୍ସାହ ଓ ଅମିତ ସାହସର ସହୃତ ଗତ କରେ । ତା'ର ଏ ଉତ୍ସାହ ଓ ସାହସ ସଙ୍ଗେ କଠିନ ଅଧ୍ୟବସାୟ, ଅକ୍ଳାନ୍ତ ପରିଶ୍ରମ ଓ ନିଃଶଙ୍କତାର ସଂଯୋଜନ ହୁଏ । ଏ ସବୁ ଶକ୍ତିର ସମାହାରକୁ କୌଣସି ପ୍ରତିବନ୍ଧକ ବାଧା ଦେଇପାରେନା' । ତେଣୁ ସେ ବାଧାବିଘ୍ନକୁ ଭ୍ରୂକ୍ଷେପ ନ କରି ଅବଲୀଳା କ୍ରମେ ସକଳ ବାଧା ଅତିକ୍ରମ କରି ଲକ୍ଷ୍ୟସ୍ଥଳରେ ଉପନୀତ ହୁଏ ।

ନିଃଶଙ୍କ ଲୋକ ବାଧାବିଘ୍ନକୁ ଦଳିପେଷି ଚାଲିଯାଏ ବୋଲି କେତେକ ଲୋକ ତା'ର ନିନ୍ଦା କରିଥାନ୍ତି । କିନ୍ତୁ ଏପରି ସମାଲୋଚନା କେବଳ ଦୁର୍ବଳ ଓ ସଙ୍କୀର୍ଣ୍ଣମନା ଲୋକଙ୍କଠାରୁ ଶୁଣାଯାଇଥାଏ । ସେମାନେ ସୂକ୍ଷ୍ମଭାବେ ତାହାର କାର୍ଯ୍ୟାବଳୀକୁ ବିଶ୍ଳେଷଣ କରି ଦେଖି ନଥାନ୍ତି । ଉନ୍ନତ ଲକ୍ଷ୍ୟ ଲାଭରେ ନିଃଶଙ୍କ ଲୋକକୁ ବହୁତ ତ୍ୟାଗ ସ୍ୱୀକାର କରିବାକୁ ହୁଏ; କିନ୍ତୁ ଲକ୍ଷ୍ୟ ଲାଭକଲେ ସେ ତ୍ୟାଗର ଶତଗୁଣ ଲାଭ ହୁଏ । ତ୍ୟାଗ ବିନା ଲାଭ ପ୍ରାପ୍ତି ଅସମ୍ଭବ । ତେଣୁ ତ୍ୟାଗ ଲାଗି ମନ ଦୁଃଖ କରିବାର କୌଣସି କାରଣ ନାହିଁ ।

କେତେକ ଲୋକ ନିଃଶଙ୍କତାକୁ ଦୁଃସାହସିକତା ସଙ୍ଗେ ଗୋଳମାଳ କରିଥାନ୍ତି । ନିଃଶଙ୍କତା ଗୋଟିଏ ସ୍ୱଗୁଣ; ଦୁଃସାହସିକତା ଗୋଟିଏ ଦୋଷ ଦୁର୍ଗୁଣ । ଦୁଃସାହସିକ ଲୋକର ବିଚାର ବୁଦ୍ଧିର ଅଭାବ ଥାଏ । କିନ୍ତୁ ନିଃଶଙ୍କ ଲୋକ ବିଚାର ବିବେଚନା ସମ୍ପନ୍ନ । ସେ ବିଚାର କରି ଯାହା ସ୍ଥିର କରେ, ତାହା କାର୍ଯ୍ୟରେ ପରିଣତ କରେ । ଦୁଃସାହସିକର ଅଗ୍ର ପଶ୍ଚାତ୍ ଭାବନା ନ ଥାଏ; କିନ୍ତୁ ନିଃଶଙ୍କ ଲୋକ ଚତୁର୍ଦ୍ଦିଗ ବିଚାର କରି ସିଦ୍ଧାନ୍ତ ଗ୍ରହଣ କରେ । ତଳ ଲିଖିତ ଉପାଖ୍ୟାନରୁ ଏ ଦୁହିଙ୍କ ମଧ୍ୟରେ କି ପାର୍ଥକ୍ୟ । ତାହା ସହଜରେ ହୃଦୟଙ୍ଗମ ହେବ ।

"ଅତେବ ଦୁଇଜଣ ଲୋକ ଭାଗ୍ୟଲକ୍ଷ୍ମୀଙ୍କର ଅନୁସନ୍ଧାନରେ ବାହାରିଲେ । ନାନା ଦେଶ, ଗ୍ରାମ, ନଗର, ଜଳ ଗହ୍ୱର, ବନ ଜଙ୍ଗଲରେ ଅନୁସନ୍ଧାନ କରି କୌଣସିଠାରେ ଭାଗ୍ୟଲକ୍ଷ୍ମୀଙ୍କର ସନ୍ଧାନ ପାଇଲେ ନାହିଁ । ଶେଷରେ ସେମାନେ ଗୋଟିଏ ନିବିଡ଼ ଅରଣ୍ୟରେ ଉପସ୍ଥିତ ହେଲେ । ସେତେବେଳକୁ କ୍ଲାନ୍ତ ଓ ଅବସାଦରେ ଉଭୟେ ହତୋତ୍ସାହ ହୋଇ ପଡ଼ିଥିଲେ । ନିରାଶାରେ ବାହୁଡ଼ ଆସିବାକୁ ବିଚାର କରୁଥିଲେ । ଏତିକିବେଳେ ଖଣ୍ଡେ ଦୂରରେ ଭାଗ୍ୟଲକ୍ଷ୍ମୀ ଆବିର୍ଭୂତ ହେଲେ । କିନ୍ତୁ ଭାଗ୍ୟଲକ୍ଷ୍ମୀ ଓ ସେମାନଙ୍କ ମଧ୍ୟରେ ଗୋଟିଏ ପ୍ରଶସ୍ତ କର୍ଦ୍ଦମପୂର୍ଣ୍ଣ ହ୍ରଦ ଥିଲା । ଭାଗ୍ୟଲକ୍ଷ୍ମୀଙ୍କ ପାଖକୁ ଯିବାକୁ ହେଲେ ଉକ୍ତ ହ୍ରଦ ଅତିକ୍ରମ କରି ଯିବା ଛଡ଼ା ଅନ୍ୟ ପଥ ନଥିଲା । ଅନ୍ୟତ୍ର ହ୍ରଦ ଘଞ୍ଚ ଓ ନିବିଡ଼ ବନାକୀର୍ଣ୍ଣ ଉଚ୍ଚ ପର୍ବତମାଳାରେ ରୁଦ୍ଧ ଥିଲା । ସେମାନେ ଅନ୍ୟ ପଥର ସନ୍ଧାନ କଲେ, କିନ୍ତୁ ଦୁର୍ଭାଗ୍ୟକୁ ଅନ୍ୟ ପଥ ନଥିଲା । ତହୁଁ ସେମାନଙ୍କ ମଧ୍ୟରୁ ଜଣେ ହ୍ରଦ ଅତିକ୍ରମ କରି ଯିବାକୁ ସ୍ଥିରକଲେ । ତାଙ୍କର ଏ ଦୁଃସାହସ ଦେଖି, ଦ୍ୱିତୀୟ ବ୍ୟକ୍ତି ଏଥିରୁ ନିବୃତ୍ତ ହେବାକୁ ତାଙ୍କୁ ଉପଦେଶ ଦେଲେ । ଅଗ୍ରପଶ୍ଚାତ୍ ବିଚାର ନ କରି ହ୍ରଦ ମଧ୍ୟରେ ପ୍ରବେଶ କଲେ ଅଗାଧ କର୍ଦ୍ଦମରେ ନିମଜ୍ଜିତ ହୋଇ ପ୍ରାଣତ୍ୟାଗ କରିବାର ଆଶଙ୍କା ଅଛି ବୋଲି ଦର୍ଶାଇ ଦେଲେ । କିନ୍ତୁ ଅତ୍ୟଧିକ ଆବେଗ ଓ ବିଚାର ବୁଦ୍ଧିର ଅଭାବରୁ ଉକ୍ତ ଲୋକ ସାଥିଙ୍କର ଉପଦେଶ ପ୍ରତି କର୍ଣ୍ଣପାତ ନକରି ହ୍ରଦ ମଧ୍ୟରେ ପ୍ରବେଶ କଲେ ଓ ଶେଷରେ କର୍ଦ୍ଦମରେ ନିମଜ୍ଜିତ ହୋଇ ପ୍ରାଣତ୍ୟାଗ କଲେ ।"

"ଅନ୍ୟ ଲୋକଟି ଭାଗ୍ୟଲକ୍ଷ୍ମୀଙ୍କ ପାଖକୁ ଯିବାପାଇଁ ଦୃଢ଼ସଙ୍କଳ୍ପ କଲେ । କିନ୍ତୁ ବିଚାର ବୁଦ୍ଧିରେ ଉପାୟ ସ୍ଥିର କରିବାକୁ

ଚିନ୍ତା କଲେ । ଶେଷରେ ବୃକ୍ଷର ଡାଳପତ୍ର ଭାଙ୍ଗି ଦହ୍ର କୂଳରେ କର୍ଦ୍ଦମରେ ନିକ୍ଷେପ କରି, ସେହି ବୃକ୍ଷ ଶାଖାଗୁଡ଼ିକ ଉପରେ ପଦ ନିକ୍ଷେପପୂର୍ବକ ସତର୍କତାର ସହିତ ଗତି କଲେ । ଏହିପରି ଭାବେ ଦହ୍ର ପାର ହୋଇ ସେ ଭାଗ୍ୟଲକ୍ଷ୍ମୀଙ୍କୁ ଭେଟିଲେ ।"

ଦୁଃସାହସୀ ଲୋକ ଦହ୍ରରେ ବୁଡ଼ିମରିବା ଲୋକର ଦଶା ହୋଇଥାଏ । କିନ୍ତୁ ନିଃଶଙ୍କ ଲୋକ ଉପରୋକ୍ତ ଦ୍ୱିତୀୟ ବ୍ୟକ୍ତିଙ୍କ ପରି ସଫଳକାମ ହୁଏ । ପୂର୍ବକଥିତ ଦ୍ୱିତୀୟ ବ୍ୟକ୍ତି ନିଜର ଜୀବନକୁ ବିପନ୍ନ କରିଥିଲେ ସତ୍ୟ, କିନ୍ତୁ ନିଃଶଙ୍କତା ସଙ୍ଗେ ବୁଦ୍ଧି ଓ ବିବେଚନାର ପରିଚାଳନା କରିବାରୁ ଜୟଶ୍ରୀ ମଣ୍ଡିତ ହୋଇଥିଲେ ।

ନିଃଶଙ୍କ ଲୋକର ଆତ୍ମଗର୍ବ ଓ ଆତ୍ମବଡ଼ିମା ଥାଏ ବୋଲି ଲୋକେ କହୁଥାନ୍ତି । କିନ୍ତୁ ଏପରି ସମାଲୋଚନା କେବଳ ଦୁର୍ବଳ ସଙ୍କୀର୍ଣ୍ଣମନାଙ୍କ ମୁଖରୁ ଶୁଣା ଯାଇଥାଏ । ନିଃଶଙ୍କ ଲୋକର ଆତ୍ମଗର୍ବ ଓ ଆତ୍ମବଡ଼ିମା ନଥାଏ, ତା'ର ଆତ୍ମବିଶ୍ୱାସ ଓ ଆତ୍ମ ପ୍ରତ୍ୟୟ ଥାଏ । ସେ ନିଜର ମୂଲ୍ୟ, ନିଜର ଶକ୍ତି ଓ ସାମର୍ଥ୍ୟର କଳନା କରିଥାଏ । ସେ ଜାଗ୍ରତ ଓ ଚତୁର ଲୋକ । ସେ ବିଚକ୍ଷଣ ଭାବେ ସୂକ୍ଷ୍ମ ଦୂର ଦୃଷ୍ଟିରେ ପ୍ରତ୍ୟେକ ବିଷୟର ବିବେଚନା କରେ । ସେଥିରେ ଉପଲବ୍ଧ କରିବାର ଆଶା ଦେଖିଲେ, ନିଃଶଙ୍କ ମନରେ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ଲକ୍ଷ୍ୟସ୍ଥଳ ଉଦ୍ଦେଶ୍ୟରେ ଅଗ୍ରସର ହୁଏ ।

ନିଃଶଙ୍କ ଲୋକ ଆପଣାର ଆତ୍ମପ୍ରତ୍ୟୟ ଓ ଦୃଢ଼ ମନୋବଳରୁ ସତତ ଜୟଶ୍ରୀ ମଣ୍ଡିତ ହୋଇଥାଏ । ବିପଦରେ ସେ ଅଧୀର ନହୋଇ ବିପଦର ସମ୍ମୁଖୀନ ହୁଏ । ସାହସର ସହିତ ବାଧାବିଘ୍ନକୁ ଅତିକ୍ରମ କରି ସେ ଅଗ୍ରସର ହୁଏ । ତା'ର କାର୍ଯ୍ୟ ବିଚାର ବୁଦ୍ଧିର ସୁଦୃଢ଼ ଭିତ୍ତି ଉପରେ ଅବସ୍ଥିତ । ସେ କଳ୍ପନାର ଅବାସ୍ତବ

ସଂଶୟରେ ବିଚରଣ କରେନା । ତା'ର ଗନ୍ତବ୍ୟ ମାର୍ଗ ବାସ୍ତବ ଜଗତର କଠୋର ବାସ୍ତବତା ମଧ୍ୟଦେଇ ବିସ୍ତୃତ । ବଳିଷ୍ଠ ଚିତ୍ତର ମାନସିକ ଏକାଗ୍ରତା ଉଚ୍ଚକୋଟିର । ଯାହା କରିବାକୁ ସେ ସ୍ଥିର କରେ, ସେଥିରେ ପ୍ରାଣମନ ନିୟୋଗ କରେ । ଏଥିନିମନ୍ତେ ସେ ଜୟଲକ୍ଷ୍ମୀଙ୍କର ବରପୁତ୍ର । ଦୁର୍ବଳ ଶଙ୍କାଗ୍ରସ୍ତ ଲୋକ ସର୍ବଥା ଜୟଶ୍ରୀଙ୍କ ଦ୍ୱାରା ଉପେକ୍ଷିତ ଓ ଅବହେଳିତ ହୋଇଥାଏ ।

( ନଅ )

# ଶଙ୍କାର ଉନ୍ମେଷ

ଶଙ୍କା ମନୁଷ୍ୟର ଗୋଟିଏ ପ୍ରଧାନ ଦୋଷ । ଅନେକ ଲୋକ ସଙ୍କୋଚ ଓ ଅତ୍ୟଧିକ ବିନୟକୁ ପ୍ରଶଂସା କରନ୍ତି ଏବଂ ତାକୁ ଦୋଷ ମଧ୍ୟରେ ଗଣନା କରନ୍ତି ନାହିଁ । ଏହା ଗୋଟିଏ ବିରାଟ ଭ୍ରାନ୍ତି ।

ସଂସାର ଗୋଟିଏ ବିଶାଳ ରଣକ୍ଷେତ୍ର । ଜୀବନ ଧାରଣ ପାଇଁ ଏଠାରେ ଅନବରତ ସଂଗ୍ରାମ ଚାଲିଛି । ଏ ସଂଗ୍ରାମରେ ଜୟଲାଭ କରିବା ସମସ୍ତଙ୍କର ଲକ୍ଷ୍ୟ, କିନ୍ତୁ ବଳିଷ୍ଠ ଓ ବୁଦ୍ଧିମାନ୍ କେବଳ ଜୟଶ୍ରୀ ମଣ୍ଡିତ ହୋଇଥାଏ । ଶଙ୍କାଶୀଳ ଅସଂଖ୍ୟ ସୁଗୁଣରେ ଭୂଷିତ ହୋଇଥିଲେ ସୁଦ୍ଧା ବିଜୟୀ ହୋଇ ପାରେନାହିଁ ।

ଶଙ୍କା ତା'ର ଲକ୍ଷ୍ୟପଥରେ ହିମାଳୟ ତୁଲ୍ୟ ଦୁରାରୋହ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହୁଏ ।

ଆତ୍ମପ୍ରତ୍ୟୟହୀନତା ଶଙ୍କାର ଜନନୀ । ଯେଉଁମାନେ ନିଜ ବଳ ଉଳନା କରିପାରନ୍ତି ନାହିଁ ଏବଂ ଯେଉଁମାନଙ୍କର ଆତ୍ମ-ବିଶ୍ୱାସ ନାହିଁ, ସେମାନେ ଏ ଶଙ୍କାରୂପକ ବ୍ୟାଧିରେ ଆକ୍ରାନ୍ତ ହୁଅନ୍ତି । ଲୋକ ଏ ରୋଗର କବଳରେ ପଡିଲେ ଦୁର୍ବଳମନା ହୋଇଯାଏ । ସେ ତାହାର ଆକାଙ୍କ୍ଷାକୁ କାର୍ଯ୍ୟରେ ପରିଣତ କରିବାକୁ ଯେ ପ୍ରେରଣା ଓ କର୍ମତତ୍ପରତା ଆବଶ୍ୟକ ତାହା ହରାଇବସେ । ତେଣୁ ନିଜର ଦୋଷ ଦୁର୍ବଳତା ଯୋଗୁଁ ଜୀବନ ସଂଗ୍ରାମରେ ପରାଜିତ ହୁଏ ।

ଅନେକ ପ୍ରକାରର ଶଙ୍କା ଅଛି । ମନର ଦୁର୍ବଳତାରୁ ଏହାର ଜନ୍ମ । ମାନସିକ ଦୁର୍ବଳତା ଦୂର କରିବା ସାଧନା ସାପେକ୍ଷ । କିନ୍ତୁ ଦୁର୍ବଳମନା ଶଙ୍କାନ୍ୱିତ ହୋଇ ପଡ଼ିଲେ, ତାହା ପକ୍ଷରେ ଏ ସାଧନା କଠିନତର ହୋଇପଡ଼େ । ବହୁତେକ ନିକୃଷ୍ଟ ମନୋବୃତ୍ତିରୁ ଶଙ୍କାର ଜନ୍ମ । ନିମ୍ନଲିଖିତ କେତୋଟି କାରଣ ଏଥିମଧ୍ୟରେ ପ୍ରଧାନ ।

(୧) ଇଚ୍ଛାଶକ୍ତିର ଦୁର୍ବଳତା ବା ଅଭାବ ।

(୨) ଅତ୍ୟଧିକ ଆତ୍ମପ୍ରତ୍ୟୟ ଓ ଆତ୍ମ-ବଡ଼ିମା ।

(୩) ଅନ୍ୟକୁ ଅସନ୍ତୋଷ କରିବାର ଭୟ ଓ ସାଧାରଣଙ୍କ ଚକ୍ଷୁରେ ପାଞ୍ଚଜଣଙ୍କ ମଧ୍ୟରେ ଶ୍ରେଷ୍ଠ ଦେଖା ନଯିବାର ଆଶଙ୍କା ।

(୪) ଅପରିଚିତଙ୍କ ଦୃଷ୍ଟିରେ ଅସ୍ୱାଚ୍ଛନ୍ଦ୍ୟ ବୋଧ ।

(୫) ଏକାଗ୍ରତାର ଅଭାବ । ଏହି ଅଭାବ ଯୋଗେ ଲୋକର ଚିନ୍ତାଧାରା ବିକ୍ଷିପ୍ତ ହୋଇପଡ଼େ ଏବଂ ଆବଶ୍ୟକ କେବଳ ଇପ୍‌ସିତ ମାର୍ଗରେ ତାର ପରିଚାଳନା ହୋଇ ପାରେ ନାହିଁ ।

(୬) ଭାବନାକୁ ଉନ୍ନତ ଓ ମାର୍ଜିତ କରିବାରେ ଆଳସ୍ୟ ଓ ଦୀର୍ଘସୂତ୍ରିତା ।

(୭) ସ୍ୱୀୟ ଭାବନାର ବିଶ୍ଳେଷଣ ଓ ପର୍ଯ୍ୟାଲୋଚନାର ଅଭାବ । ଏ ତ୍ରୁଟିରୁ ଭାବନାର ଯଥାର୍ଥ୍ୟ ହୃଦୟଙ୍ଗମ କରିହୁଏ ନା' ।

୮ ଅନ୍ୟଗୋଟିଏ କାରଣ, ହେଉଛି ଯେ କେତେକ ଲୋକ ଆପଣାର ମୂଲ୍ୟ ଓ ଗୁରୁତ୍ୱକୁ ଖୁବ୍ ବଡ଼କରି ଦେଖନ୍ତି ଏବଂ ସମସ୍ତଙ୍କ ଦୃଷ୍ଟି ତାଙ୍କ ଉପରେ ନିକ୍ଷିପ୍ତ ବୋଲି କଳ୍ପନା କରି ନିଅନ୍ତି । ଏଥିଯୋଗେ ବେଶଭୂଷା, ପରିପାଟି ଓ ଭାବଭଙ୍ଗୀରେ କୌଣସି ତ୍ରୁଟି ରହିଯାଇ ଥିବାରୁ ଆଶଙ୍କା କରି ସେମାନେ ଶଙ୍କାନ୍ୱିତ ହୁଅନ୍ତି ।

ଶଙ୍କାଶୀଳ ଲୋକ ବଡ଼ ଅଭିମାନୀ । ସେ ତିଳକୁ ତାଳ କରେ । ଯେଉଁ କଥା ସାଧାରଣ ଲୋକଙ୍କ ଦୃଷ୍ଟିରେ ହେୟ, ସେ କଥା ତା' ନିକଟରେ ଗୁରୁତ୍ୱ ଲାଭ କରେ । ସାମାନ୍ୟ ବାହ୍ୟିକ ଉଦାସୀନତା ବା ଗ୍ରହଣରେ ସହାନୁଭୂତିର ଟିକିଏ ଅଭାବ ଦେଖିଲେ, ତା'ର ପ୍ରାଣରେ ଦାରୁଣ ଆଘାତ ଲାଗେ । ସେ ସ୍ୱଭାବତଃ ଲୋକ ସଂସର୍ଗରୁ ଦୂରରେ ରହୁଥିବାରୁ, ଏଇ ସାମାନ୍ୟ କଥାକୁ ଭାବି ଭାବି ପର୍ବତ ଆକାରରେ ଦେଖେ । ତା'ର ଧାରଣା ଓ ସିଦ୍ଧାନ୍ତ ଏକଦେଶୀ ଓ ପ୍ରକୃତ ସତ୍ୟଉପରେ ପ୍ରତିଷ୍ଠିତ ନୁହେଁ । ଏଥିଯୋଗୁଁ ସେ ଅନେକ ସମୟରେ ବୃଥା ସମସ୍ୟାରେ ପଡ଼ି ବ୍ୟତିବ୍ୟସ୍ତ ହୋଇଥାଏ । ଯେପରି ଅଣୁବୀକ୍ଷଣ ଯନ୍ତ୍ରରେ ଅତି କ୍ଷୁଦ୍ର ଅଣୁଟିଏ ଏତେ ବଡ଼ ଦେଖାଯାଏ, ସେହିପରି ଏପରି ଲୋକମାନଙ୍କ ଚକ୍ଷୁରେ ନଗଣ୍ୟ ଘଟଣା ଅତିରଞ୍ଜିତ ହୋଇ ଏତେବଡ଼ ଦେଖାଯାଏ ।

ଶଙ୍କା ଲୋକର କ୍ଷମତା ଓ ଇଚ୍ଛାଶକ୍ତିକୁ ନଷ୍ଟ କରିଦିଏ । ଯେଉଁମାନେ ଲୋକହସାକୁ ଡରନ୍ତି, ସେମାନେ ଅଧିକ ହାସ୍ୟାସ୍ପଦ

ହୁଅନ୍ତି । ନିଜର ଗୁରୁତ୍ୱକୁ ବଡ଼ ଆକାରରେ ଦେଖିବା ଓ ସର୍ବ-ସାଧାରଣଙ୍କ ଆଖିରେ ପାଞ୍ଚଜଣଙ୍କ ଭିତରେ ବଡ଼ ଦେଖା ନଯିବାର ଭୟରୁ ଶଙ୍କାର ଉତ୍ପତ୍ତି । ସଭା ସମିତିରେ ବା ସାମାଜିକ ମିଳନରେ ଏହି ଭୟ ଯୋଗୁଁ ଶଙ୍କାଗ୍ରସ୍ତ ଲୋକର ବାକ୍‌ସ୍ଫୂର୍ତ୍ତି ହୁଏନାହିଁ; ଏଥିଯୋଗେ ସେମାନେ ଯେଉଁ ଲୋକହସାକୁ ଡରୁଥାନ୍ତି, ସେଇ ଲୋକ ହସାରେ ପଡନ୍ତି । ଏହି ବିଷୟରେ ଜଣେ ବିଖ୍ୟାତ୍ ମନସ୍ତତ୍ତ୍ୱବିତ୍ ତାଙ୍କର ଆତ୍ମଜୀବନ—ଚରିତରେ ନିମ୍ନଲିଖିତ ଭାବେ ଗୋଟିଏ ଘଟନା ବର୍ଣ୍ଣନା କରିଛନ୍ତି ।

"ମୋର ଜଣେ ପ୍ରତିଷ୍ଠାପନ୍ନ ପ୍ରତିବେଶୀଙ୍କର ଗୋଟିଏ ପୁଅ ଥିଲା । ପିତାଙ୍କର ପ୍ରତିଷ୍ଠା ଓ ସୁଖ୍ୟାତିଯୋଗୁଁ ଯୁବକଟିକୁ ଉଚ୍ଚ ପରିବାର ଓ ସମ୍ଭ୍ରାନ୍ତ ସମାଜରେ ଚଳାଚଳ କରିବାକୁ ପଡ଼ୁଥିଲା । କିନ୍ତୁ ସଭାସମିତି ବା ସାମାଜିକ ମିଳନରେ ଆଦବ୍ କାଇଦାର ଅଭାବ ଓ ବିଲକ୍ଷଣ ଅଙ୍ଗଭଙ୍ଗୀ ଯୋଗୁଁ ସେ ବିଶେଷରୂପେ ପରିଚିତ ଥିଲା । କେହି ତାକୁ ଚାହା ପିଆଲାଏ ଦେଲେ, ସେ ଏପରି ଭାବେ କମ୍ପିତହସ୍ତରେ ଧରୁଥିଲା ଯେ ଚାହାସବୁ ନିଜର ପୋଷାକ ପରି-ଚ୍ଛଦରେ ଢାଳି ହୋଇ ଯାଉଥିଲା । ତା'ର ଏପରି ଭାବଭଙ୍ଗୀରେ ଲୋକେ ହସୁଥିଲେ । ଏ ରୂପ ହାସ୍ୟାସ୍ପଦ ହୋଇ ସେ ଅତ୍ୟଧିକ ବିଚଳିତ ହେଉଥିଲା । କୌଣସି ଭୋଜିରେ ସେ ଏପରି ଭୟ ଓ ସଂକୋଚରେ ଖାଉଥିଲା ଯେ, ସମସ୍ତଙ୍କର ଭୋଜନ ଶେଷହେବା ବେଳକୁ ତାର ପାତରୁ ଏକଚତୁର୍ଥାଂଶ ସୁଦ୍ଧା ଶେଷ ହେଉନଥିଲା ।"

"କୌଣସି ଭଦ୍ରବ୍ୟକ୍ତିଙ୍କୁ ଅଭିବାଦନ କରିବାକୁ ହେଲେ ଯୁବକଟିର ମୁଖ ଆତଙ୍କରେ ବିବର୍ଣ୍ଣ ହେଉଥିଲା । ଶଙ୍କାକୁଳ ମନରେ ଚତୁର୍ଦ୍ଦିଗକୁ ଦୃଷ୍ଟି ନଦେଇ ଏପରି କମ୍ପିତ ପଦରେ ଅଗ୍ରସର

ହେଉଥିଲା ଯେ ଶେଷରେ ଝୁଣ୍ଟି ପଡ଼ି ଭୂପତିତ ହେଉଥିଲା । ତା'ର ଏଡାଦୃଶ ବ୍ୟବହାରରେ ଲୋକେ ହସି ଉଠୁଥିଲେ ।''

"ତାର ଏପରି ଆଚରଣରେ ବ୍ୟତିବ୍ୟସ୍ତ ହୋଇ ତାକୁ ଅନ୍ୱେଷଣ କରିଦେବା ନିମନ୍ତେ ଯୁବକଟିର ପିତା ମତେ ଅନୁରୋଧ କଲେ । ଯୁବକଟି ଏକାକୀ ଥିବାବେଳେ କପରି ନିଃଶଙ୍କ ମନରେ ଥାଏ, ଝରକାବାଟେ ଦେଖି ମୁଁ ପୂର୍ବରୁ ସେ କଥା ଦେଖିଥିଲି । ମୁଁ ଲକ୍ଷ୍ୟ କରିଥିଲି ଯେ ନିର୍ଜନରେ ଯୁବକଟିର ଭାବଭଙ୍ଗୀରେ କୌଣସି ତ୍ରୁଟି ନଥାଏ; କେବଳ ଲୋକମାନଙ୍କ ସମ୍ମୁଖରେ ବା ସଭା ସମିତିରେ ତା'ର ଏପରି କୁଲକ୍ଷଣ ପ୍ରକାଶ ପାଏ । ତେଣୁ ଅତ୍ୟଧିକ ଆତ୍ମସଚେତନତା ଯୋଗୁଁ ଯେଉଁମାନେ ଶଙ୍କାଗ୍ରସ୍ତ, ଏ ଯୁବକଟି ସେହି ଶ୍ରେଣୀର ବୋଲି ମୁଁ ନିର୍ଣ୍ଣୟ କରିଥିଲି । ଏ ଶ୍ରେଣୀର ଶଙ୍କାଯୁକ୍ତ ଲୋକ ଆପଣାର ମୂଲ୍ୟ ଓ ଗୁରୁତ୍ୱକୁ ବଡ଼ ଆକାରରେ ଦେଖନ୍ତି । ସେ କଳ୍ପନା କରି ନିଅନ୍ତି ଯେ ସମସ୍ତଙ୍କର ଦୃଷ୍ଟି ତାଙ୍କରିଠାରେ କେନ୍ଦ୍ରୀଭୂତ; ଏପରିକି ତାଙ୍କର ସାମାନ୍ୟ ଅଙ୍ଗଚାଳନାକୁ ଲୋକେ ଅବଲୋକନ କରୁଛନ୍ତି । ଏ ରୂପ ଭ୍ରାନ୍ତ ଧାରଣା ଯୋଗୁଁ ସେମାନଙ୍କ ମନରେ ଶଙ୍କା ବ୍ୟାଧି ପ୍ରବେଶକରେ । ତେଣୁ ସଭା ସମିତି ବା ଲୋକମାନଙ୍କ ଉପସ୍ଥିତିରେ ମାନସିକ ଭାରକେନ୍ଦ୍ର ହରାଇ ସେମାନେ ବିଚଳିତ ହୋଇ ପଡନ୍ତି ।''

"ଯୁବକଟିକୁ ଆରୋଗ୍ୟ କରିବାକୁ ମୁଁ ମୋର ଉପାୟ ସ୍ଥିର କରି ନେଲି । ଦିନେ ତାହାର ଉପସ୍ଥିତିରେ ତା'ର ପିତାଙ୍କୁ ପଚାରିଲି—"ଇଏ ଆପଣଙ୍କ ପୁଅ ?''

"କାଲୁ ଆପଣ ଯେ ତାକୁ ପୂର୍ବରୁ ଚିହ୍ନନ୍ତି", ତା'ର ପିତା ଉତ୍ତର ଦେଲେ ।

"ନା, ମୁଁ ତ କେବେହେଲେ ଏହାକୁ ଦେଖିନାହିଁ", ମୁଁ କହିଲି ।

"କଣ, ଏହା କପରି ହୋଇପାରେ ! ଗତକାଲି ଭୋଜିରେ ଆପଣ ଉପସ୍ଥିତ ଥିଲେ । ଆପଣ ନିଶ୍ଚୟ ଦେଖିଥିବେ ଏ କପରି ହାସ୍ୟାସ୍ପଦ ହେଲା ।", ମୋର ପଡ଼ୋଶୀ କହିଲେ ।

"କପରି", ମୁଁ ପଚାରିଲି ।

ପଡ଼ୋଶୀ କହିଲେ—"କଣ, ଆପଣଙ୍କର ମନେ ନାହିଁ ! ଜଣେ ଭଦ୍ରଲୋକଙ୍କୁ ଅଭିବାଦନ କରିବାକୁ ସେ କପରି ନମ୍ରମନ ଓ ଅସ୍ଥିର ପଦରେ ଅଗ୍ରସର ହୋଇ ହୋଇ ହଠାତ୍ ଭୂପତିତ ହେଲା ଏବଂ ଲୋକେ ହସି ଉଠିଲେ, ଏ କଥା କଣ ଆପଣଙ୍କର ସ୍ମରଣ ନାହିଁ ।"

ଅନ୍ୟମନସ୍କ ଭାବେ ମୁଁ ଉତ୍ତର ଦେଲି, "ହଁ, ଏକଥା ମୋର ମନେ ପଡ଼ୁଛି; କିନ୍ତୁ ମୁଁ ଏ ଘଟନା ଭଲକରି ଦେଖି ନାହିଁ । ସେତେବେଳେ ମୋର ଜଣେ ବନ୍ଧୁଙ୍କ ସଙ୍ଗରେ ମୁଁ କଥାବାର୍ତ୍ତାରେ ଏପରି ମଗ୍ନ ଥିଲି ଯେ, ଏ ଘଟନା ବା ଏହାର କର୍ତ୍ତାଙ୍କ ପ୍ରତି ମୁଁ ବିଶେଷ ଦୃଷ୍ଟି ଦେଇନଥିଲି ।"

ମୁଁ ଏତିକି କହିଦେବା ସଙ୍ଗେ ସଙ୍ଗେ ଯୁବକଟିର ମୁଖ ଉଜ୍ଜ୍ୱଳ ଦେଖାଗଲା । ତାଙ୍କ ମୁଖର ଏ ପରିବର୍ତ୍ତନ ଲକ୍ଷ୍ୟକରି, ତାଙ୍କର ଶଙ୍କା କ ପ୍ରକାରର, ଏ ବିଷୟରେ ମୁଁ ଯେ ସିଦ୍ଧାନ୍ତ କରିଥିଲି, ତାହା ଠିକ୍ ବୋଲି ଭାବି ମନେ ମନେ ଆନନ୍ଦିତ ହେଲି ।"

"ତାଙ୍କୁ ଅଭ୍ୟର୍ଥନା କରିବାକୁ ଯାଇ, ପ୍ରଥମେ ମୋର ଜଣେ ସାଧାରଣ ଶିଷ୍ୟଭାବେ ମୁଁ ସବୁଠାରେ ଯୁବକଟିର ପରିଚୟ ଦେଲି । ଏଥିରେ ତାଙ୍କର ଅସ୍ୱସ୍ତିଭାବ ଭାଙ୍ଗିଗଲା । ସେ ନିଜର ଗୁରୁତ୍ୱକୁ

ଅଙ୍କ ବଡ଼ ଅର୍ଥରେ ନ ଦେଖି ନିଜକୁ ଜଣେ ସାଧାରଣ ଲୋକ ବୋଲି ଭାବିଲେ । ତେଣୁ ଲୋକମାନଙ୍କ ସମ୍ମୁଖରେ ବା ସଭା ସମିତିରେ ଅଙ୍କ ଶଙ୍କାନ୍ୱିତ ହେଉନାହିଁ । ତାଙ୍କପରି ଜଣେ ସାଧାରଣ ଲୋକପ୍ରତି କାହିଁକି ଡାହାର ଦୃଷ୍ଟି ରହିବ, ଏହି ଧାରଣା ତାଙ୍କ ମନରେ ଦୃଢ଼ ହୋଇ ଉଠିଲା । ଶେଷରେ ମୋର ଯତ୍ନ ଓ ଶିକ୍ଷାରେ ତାଙ୍କର ଶଙ୍କା ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହେଲା ।”

ଆଉ ଗୋଟିଏ ପ୍ରକାର ଶଙ୍କା ଅଛି, ଆତ୍ମ-ମୂଲ୍ୟ-ଚେତନା ଓ ଆତ୍ମ-ପ୍ରତ୍ୟୟର ଏକାନ୍ତ ଅଭାବରୁ ଏହାର ଜନ୍ମ । ଯେଉଁମାନେ ନିଜକୁ ଅସୁନ୍ଦର ଓ ଅଜ୍ଞାନ ଭାବନ୍ତି, ସେହିମାନଙ୍କର ଏ ପ୍ରକାରର ଶଙ୍କା ଜାତ ହୁଏ । ନିଜକୁ ସମସ୍ତଙ୍କ ଅପେକ୍ଷା ହୀନ ଓ ତୁଚ୍ଛ ଭାବିବାରୁ ଏମାନେ ଲୋକ ସମାଜରେ ଶଙ୍କିତ ଓ ସଙ୍କୁଚିତ ହୋଇ ରହନ୍ତି ।

ଶଙ୍କା କେବେହେଲେ ସୁଗୁଣ ନୁହେଁ । ଏହି ଶଙ୍କାରୁ ଶେଷରେ ହିଂସା ଓ ଈର୍ଷ୍ୟା ଜାତ ହୁଏ । ଶଙ୍କାଶୀଳ ସ୍ତ୍ରୀମାନେ ଲାଞ୍ଛନା ଓ ଅପମାନ ସବୁଦା ନୀରବରେ ସହ୍ୟ କରି ପାରନ୍ତି ନାହିଁ । କାଳକ୍ରମେ ସେମାନଙ୍କର ଶଙ୍କା ଅନ୍ୟମାନଙ୍କ ପ୍ରତି ଈର୍ଷ୍ୟାରେ ପରିଣତ ହୁଏ । ଏମାନେ ଶଙ୍କାବଶତଃ ଅନ୍ୟମାନଙ୍କ ସଙ୍ଗେ ମିଳାମିଶା ଓ ବନ୍ଧୁତା କରି ପାରନ୍ତି ନାହିଁ, ତେଣୁ କାହାର ସହାନୁଭୂତି ପାଆନ୍ତି ନାହିଁ । ପରିଶେଷରେ ମନ ଦୁଃଖରେ ସେମାନେ ଲୋକ ସଂସର୍ଗରୁ ଦୂରରେ ରହି କାଳଯାପନ କରିବାକୁ ଆରମ୍ଭ କରନ୍ତି । ନିର୍ଜନରେ ନିଃସଙ୍ଗୀ ହୋଇ ଅଧିକ ସମୟ ରହୁଥିବାରୁ, ସେମାନଙ୍କ ମନରେ ନାନାଧି କୁଭାବନା ଆସେ ଓ କ୍ରମେ ସେମାନଙ୍କ ମନର ଅଧୋଗତି ହୁଏ । ସେମାନେ ମନେ ମନେ ନିଜକୁ ବଡ଼ ବୋଲି ଭାବନ୍ତି । ସେମାନଙ୍କର ଏହି ଶ୍ରେଷ୍ଠତ୍ୱ

ଯୋଗ୍ୟ ଲୋକେ ଈର୍ଷ୍ୟା ପରବଶ ହୋଇ ସେମାନଙ୍କ ପ୍ରତି ଉଦାସୀନ ଓ ସହାନୁଭୂତିହୀନ ହେବାରୁ ସେମାନଙ୍କ ମନରେ ଧାରଣା ଜାତ ହୋଇ ଦୃଢ଼ୀଭୂତ ହୁଏ । ଏପରି ଲୋକମାନଙ୍କର ମନୋବୃତ୍ତିର ବିକୃତି ଘଟେ । ଏକ ପ୍ରକାର ବାତୁଳତା ଏମାନଙ୍କୁ ଗ୍ରାସ କରେ । ସମସ୍ତ ସମୟରେ ମାନସିକ ଉତ୍ତେଜନାରେ ସେମାନେ ଏପରି କାର୍ଯ୍ୟ କରି ପକାନ୍ତି ଯେ ତାହା ଶୁଣିଲେ ଧୀର-ସ୍ଥିର ଚିତ୍ତ ଲୋକମାନଙ୍କର ବିସ୍ମୟ ଜାତ ହୁଏ ।

ପ୍ରତ୍ୟେକ ବିଷୟରେ ଲୋକମତ ପ୍ରତି ଭୟ ଶଙ୍କାର ଅନ୍ୟତମ କାରଣ । ନିମ୍ନଲିଖିତ ଘଟଣାଟିରୁ ଏକଥା ସହଜରେ ଅନୁମେୟ ।

"ଥରେ ହାଇକୋର୍ଟରେ ଗୋଟିଏ ବଡ଼ ମକଦ୍ଦମା ବିଚାର ହେବାର ଥିଲା । ବିଚାର ଦିନ ଉଭୟ ପକ୍ଷର ଓକିଲମାନେ ଉପସ୍ଥିତ ଥାନ୍ତି । ପ୍ରତିବାଦୀ ପକ୍ଷରେ ଜଣେ ବଡ଼ ଓକିଲ ଥିଲେ । ଓକିଲତି ବ୍ୟବସାୟରେ ତାଙ୍କର ବିଶେଷ ଖ୍ୟାତି ଓ ଦକ୍ଷତା ଥିଲା । କିନ୍ତୁ ଲୋକଙ୍କର ମତାମତକୁ ସେ ବଡ଼ ଭୟ କରୁଥିଲେ । ସେ ପ୍ରତିବାଦୀ ପକ୍ଷରୁ ଠିଆ ହେବାର ଦେଖି ବାଦୀ ପକ୍ଷ ହତାଶ ହୋଇ ପଡ଼ିଲେ ଏବଂ ସେମାନେ ନିଶ୍ଚୟ ମକଦ୍ଦମା ହାରିବେ ବୋଲି ଭାବିଲେ । ବଡ଼ ଓକିଲଟି ସୁଆଲ ଜବାବ କରିବାକୁ ଉଠିଲେ । ସେ ତାଙ୍କର ବକ୍ତବ୍ୟ ଆରମ୍ଭ କରିଛନ୍ତି, ଏତିକିବେଳେ ବାଦୀପକ୍ଷରୁ ଜଣେ ଚତୁର ଲୋକ ତାଙ୍କ କାନରେ ଚୁପ୍ ଚାପ୍ କରି କହିଦେଲେ ଯେ ତାଙ୍କର ବେଶଭୂଷାର ପରିପାଟିରେ କିଛିଏ ତ୍ରୁଟି ରହିଯାଇଛି । ଏତିକିରେ ଉକ୍ତ ଓକିଲ ବିଚଳିତ ହୋଇ ପଡ଼ିଲେ । ତାଙ୍କର ବେଶଭୂଷା ଦେଖି ଲୋକେ ହସିବେ ଭାବି ତାଙ୍କ ମନରେ ଶଙ୍କା ଭରିଗଲା । କେହି ନ କହୁଥିଲେ ସୁଦ୍ଧା, ତାଙ୍କ

ବେଶଭୂଷା ଦେଖି ଲୋକେ ହସୁଛନ୍ତି ବୋଲି ସେ ଅନୁଭବ କଲେ । ତାଙ୍କ ମୁହଁ ବଙ୍ଗା ପଡ଼ିଗଲା, କଣ୍ଠ ରୋଧ ହେଲା । ଶେଷରେ ବାଧ୍ୟ ହୋଇ ସେ ବକ୍ତୃତାଳୟ ତ୍ୟାଗ କଲେ । ଫଳରେ ଅପର ପକ୍ଷ ମକଦ୍ଦମା ଜିତିଲେ ।"

ଭ୍ରାନ୍ତ ଭାବନା ଶଙ୍କାର ଅନ୍ୟ ଗୋଟିଏ କାରଣ । ତଳ ଲିଖିତ ଘଟନାରୁ ଶଙ୍କାନ୍ୱିତ ମନର ଅବସ୍ଥା ପରିଷ୍କାର ବୁଝାଯାଏ ।

"ଏକଦା ଜଣେ ଚିତ୍ରକର ଥିଲେ । ସେ ଚିତ୍ରବିଦ୍ୟାରେ ଏପରି ନିପୁଣତା ଲାଭ କରିଥିଲେ ଯେ ତାଙ୍କ ସଙ୍ଗେ ତୁଳନା କରିବାକୁ ଅନ୍ୟ ଚିତ୍ରକର ନଥିଲେ । ଲୋକମାନଙ୍କ ମନରେ ଅତ୍ୟଧିକ ଭୟ ସଞ୍ଚାର କରିବା ଭଳି ଗୋଟିଏ ଭୟଙ୍କର ଚିତ୍ର ଅଙ୍କନ କରିବାକୁ ସେ ମନସ୍ଥ କଲେ । ସ୍ୱପ୍ନରେ ଯେ ସବୁ ଭୟାବହ ରୂପ ଦେଖାଯାଏ, ତହିଁରୁ ଉପାଦାନ ସଂଗ୍ରହ କରି ଗୋଟିଏ ଭୟାବହ ଚିତ୍ର ଅଙ୍କନ କଲେ ଓ ତାହାକୁ ଆପଣାର ଚିତ୍ର ଶାଳାରେ ଟାଙ୍ଗିଦେଲେ ।"

"ଥରେ ସନ୍ଧ୍ୟା ବେଳା ନିଜର ଚିତ୍ରାଳୟରେ ପ୍ରବେଶ କରିବା ବେଳେ ଏହି ଭୀଷଣ ଛବିଟି ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ଛବିରେ ଭୟାବହ ରୂପ ଦେଖି ଅତ୍ୟଧିକ ଭୟରେ ତାଙ୍କର ରକ୍ତ ଶୀତଳ ହୋଇଗଲା । ସେ ରୂପ ଯେ ଗୋଟିଏ ଚିତ୍ର ଓ ନିଜେ ଯେ ତାହାକୁ ଅଙ୍କନ କରିଛନ୍ତି ଏବଂ ସେଥିରେ ଯେ ଭୟର କୌଣସି କାରଣ ନାହିଁ, ଏ କଥା ସେ ଜାଣିଥିଲେ ସୁଦ୍ଧା ନିଜର ମନରୁ ଭୟ ଦୂର କରି ପାରିଲେ ନାହିଁ । କ୍ରମେ ତାଙ୍କର ଭୟ ଏତେଦୂର ବୃଦ୍ଧି ହେଲା ଯେ ପରେ ସେ ଛବିଟିକୁ ନଷ୍ଟ କରିଦେଲେ ।"

ଶଙ୍କାଗ୍ରସ୍ତର ମନ ଠିକ୍ ଏହି ଚିତ୍ରକରଙ୍କ ମନ ସଦୃଶ । ନିଜର କଳ୍ପନା ଜାତ ଦୁଃଖକୁ ସେ ଅତିରଞ୍ଜିତ କରି ଦେଖନ୍ତି । ସେ ପରିହାସରେ ଉପହାସ, ସହାନୁଭୂତିରେ ତାଚ୍ଛଲ୍ୟ, ଆଦରରେ

ହତାଦର ଦେଖନ୍ତି । ସେ ନିନ୍ଦାକୁ ଯେପରି ଡରନ୍ତି, ପ୍ରଶଂସାକୁ ମଧ୍ୟ ସେହିପରି ଡରନ୍ତି, ନିନ୍ଦାକୁ ତ ତାଙ୍କର ସ୍ୱାଭାବିକ ଡର, କିନ୍ତୁ କେହି ପ୍ରଶଂସା କଲେ ତାଙ୍କୁ କିଛି ଉତ୍ତର ଦେବାକୁ ପଡ଼ିବ, ଏହି ଭୟରେ ଆତଙ୍କିତ ହୋଇ ସେ ମଧ୍ୟ ପ୍ରଶଂସାକୁ ଭୟ କରନ୍ତି । ତେଣୁ ତାଙ୍କ ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼େ ।

ଆଶଙ୍କା ଓ ସନ୍ଦେହରୂପକ କୁହେଳିକା ଶଙ୍କାନ୍ୱିତ ମନକୁ ଆବୃତ କରେ । ଲୋକହସା ହେବା ବା ଲୋକ ଚକ୍ଷୁରେ ହେୟ ଦେଖାଯିବା ଆଶଙ୍କାରେ ସେ ସବୁବେଳେ ଥରହର ହେଉଥାଏ । ସାମାନ୍ୟ କଥା ତାକୁ ବ୍ୟତିବ୍ୟସ୍ତ କରେ ବୋଲି ସେ ଲୋକ-ସଂସର୍ଗ ତ୍ୟାଗ କରି ନିର୍ଜନତାରେ ଆଶ୍ରୟ ନିଏ । ଭୟରେ ବିବର୍ଣ୍ଣ ମୁଖ ହେବା ଶଙ୍କାନ୍ୱିତ ଲୋକର ପ୍ରଧାନ ଦୁର୍ଦ୍ଦଶା । ଅତି ସାମାନ୍ୟ କଥାରେ ତା'ର ମୁଖ ରଙ୍ଗା ପଡ଼ିଯାଏ ଏବଂ ତା'ର ମୁଖର ଏ ପରିବର୍ତ୍ତନ ଦେଖି ଲୋକେ କଣ ଭାବିବେ, ଏହି ଆଶଙ୍କାରେ ସେ ଅଧିକ ଭୀତ ଓ ବିଚଳିତ ହୋଇପଡ଼େ । କଥାବାର୍ତ୍ତାବେଳେ କୌଣସି ଲୋକର ନାମ ଉଚ୍ଚାରଣ ସଙ୍ଗେ ତା' ମୁଖର ବିବର୍ଣ୍ଣତା ଦେଖି, ତାଙ୍କ ସଙ୍ଗେ ତାହାର କୌଣସି ଗୋପନୀୟ ସମ୍ବନ୍ଧ ଥିବାର ବୋଲି ଲୋକେ ଭାବିବେ, ଏପ୍ରକାର ଭାବନା ତାକୁ ଅଧିକ ବ୍ୟତିବ୍ୟସ୍ତ କରେ । ପୂର୍ବେ ଘଟିଥିବା ଏହିପରି କୌଣସି ଘଟଣାର ସ୍ମୃତି ତା'ର ମାନସିକ ଦୁରବସ୍ଥାକୁ ବୃଦ୍ଧି କରେ । କାରଣ ଏପରି ଲୋକମାନଙ୍କର ଶଙ୍କା ସଙ୍ଗେ ଅତ୍ୟଧିକ ଆତ୍ମାଭିମାନ ଥାଏ । ସେ ମାନସିକ ନିର୍ଜନତାରେ ବହୁ ଅବସର ଆତ୍ମକେନ୍ଦ୍ରିକ ଏକଦେଶୀ ଭାବନା କରିବା ଦ୍ୱାରା, ଏ ଅଭିମାନର ଜନ୍ମ ହୋଇଥାଏ । ଏକାଗ୍ର ମନରେ ଆତ୍ମଚିନ୍ତା ଓ ସ୍ୱଚରିତ୍ରାନୁଶୀଳନ ଶ୍ରେଷ୍ଠ ସଦ୍‌ଗୁଣ ହେଲେହେଁ, ଶଙ୍କାଶୀଳ ଲୋକପକ୍ଷେ ଏହା ମାରାତ୍ମକ । ଏହା ସେମାନଙ୍କ ମନରେ

ସ୍ୱୀୟ କଳ୍ପନା ସମ୍ଭୂତ ଦୁଃଖ ଦୁର୍ଦ୍ଦଶାରେ ନିମଜ୍ଜିତ ହେବାର କାରଣ ହୋଇଥାଏ । ଏତଦ୍ଦ୍ୱାରା ସେମାନଙ୍କ ମନର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୁଏ । ମାନସିକ-ନିର୍ଜ୍ଜନତା ଓ ଅପଣାର ଏକଦେଶଦର୍ଶୀ ଭାବନାରେ ସେମାନେ ପ୍ରକୃତ କଥାକୁ ବିକୃତ କରି ଉଦାସୀନତାକୁ ଶତ୍ରୁତା ଓ ଶତ୍ରୁତାକୁ ଉତ୍ପୀଡ଼ନ ରୂପେ ଦେଖି ମର୍ମାହତ ହୋଇଥାନ୍ତି ।

ଅତ୍ୟଧିକ ବିନୟ ବା ସଙ୍କୋଚ ସୁଗୁଣ ନୁହେଁ । ନିଜପ୍ରତି ଅବିଶ୍ୱାସ୍‌କର ଭାବ ଓ ଶକ୍ତିହୀନତାରୁ ଏହାର ଜନ୍ମ । ଶକ୍ତି ସମ୍ପନ୍ନଙ୍କର ଭାଗ୍ୟ । ଏ ଦୁନିଆରେ କେବଳ ଶକ୍ତିଶାଳୀ ଲୋକର ଅଧିକାର ଅଛି ।

## ଦଶ

# ଶଙ୍କା ନିରାକରଣର ଉପାୟ

ଶଙ୍କା ଦୁଃଖ ଦୁର୍ଦ୍ଦଶା ସୃଷ୍ଟି କରି ଜୀବନ ବିଫଳ କରେ । ବୈଚିତ୍ର୍ୟହୀନ ଦୈନନ୍ଦିନ ଜୀବନର ସାମାନ୍ୟ ଘଟଣାରୁ ଆରମ୍ଭକରି ଜୀବନ ନାଟକର ସମସ୍ୟା ବହୁଳ ଘଡ଼ସନ୍ଧି ଅଙ୍କରେ ଶଙ୍କାଯୋଗେ ମନୁଷ୍ୟ ଦୁଃଖ, ଅପମାନ ଓ ପରାଜୟ ବରଣ କରିଥାଏ । ତେଣୁ ଜୀବନରୁ ଉକ୍ତ ଦୋଷର ଦୂରୀକରଣ ସର୍ବଥା ବିଧେୟ ।

ଶଙ୍କାରୋଗର ଦୂରୀକରଣରେ ଜଣେ ମନସ୍ତତ୍ତ୍ୱବିଦ୍‌ଙ୍କର ସାହାଯ୍ୟ ଓ ସହଯୋଗ ମିଳିଲେ କାର୍ଯ୍ୟ ସୁଗମ ହୁଏ । ଏପରି ଲୋକର ଅଭାବ ହେଲେ ବଳିଷ୍ଠମନା କୌଣସି ଗୁରୁଜନଙ୍କର ସାହାଯ୍ୟ ମଧ୍ୟ ଯଥେଷ୍ଟ ହେବ । କୌଣସି ଲୋକର ସାହାଯ୍ୟ ବିନା ଏଥିରୁ ଯେ ମୁକ୍ତିଲାଭ କରାଯାଇ ପାରିବ ନାହିଁ, ଏପରି ନୁହେଁ, ତେବେ ଏତାଦୃଶ ସାହାଯ୍ୟ ମିଳିଲେ ଏହାର ନିରାକରଣ ସହଜସାଧ୍ୟ ହୁଏ ।

ସ୍ୱଭାବତଃ ଶଙ୍କାଗ୍ରସ୍ତ ଲୋକ ଦୁର୍ବଳମନା । ଅଧ୍ୟବସାୟ ସହକାରେ କୌଣସି କାର୍ଯ୍ୟରେ ଧୈର୍ଯ୍ୟଧରି ଗତି କରିବାକୁ ତାହାର ସାହସ ଓ ମନୋବଳ ନଥାଏ । ପୁଣି ପ୍ରଥମ ଉଦ୍ୟମରେ ବିଫଳ ହେଲେ ସେ ହତୋତ୍ସାହ ହୋଇପଡେ । ଅନ୍ୟ କେହି ଉତ୍ସାହିତ କରି ତାକୁ ନୈରାଶ୍ୟର ଗହ୍ୱରରୁ ଉତ୍ତୋଳନ କଲେ, ତା'ର ଉଦ୍ୟମ ପୁନର୍ବାର ଓ ଅଲ୍ପାୟାସ ସାଧ୍ୟ ହୁଏ ।

ଅକ୍ରମଣ୍ୟ ଦୁର୍ବଳମନା ସର୍ବଦା ଗୋଟିଏ ଅଶ୍ରୟ ଲୋଡେ । ଆଶ୍ରୟ ପାଇଲେ ତାହାର ମନରେ ବଳ ଓ ସାହସ ଆସେ । ଏପରି ସାହାଯ୍ୟକାରୀ ନିଜେ ଦୁର୍ବଳ ହେଲେ ସୁଦ୍ଧା, ଶଙ୍କାନ୍ୱିତ ଲୋକର ମନରେ ଧୈର୍ଯ୍ୟ ଓ ବଳ ଦାନ କରିବାକୁ ସମର୍ଥ ହୋଇଥାନ୍ତି ।

ଅନେକ ସମୟରେ ଦେଖାଯାଇ ଥାଏ, ଭୟାର୍ତ୍ତ ଲୋକ ଅନ୍ଧକାର ରଜନୀରେ କୌଣସି ସ୍ଥାନକୁ ଏକାକୀ ଯିବାକୁ ସାହସ କରେ ନାହିଁ । କିନ୍ତୁ ତା'ସଙ୍ଗରେ ଜଣେ ପିଲାକୁ ଦେଲେ, ସେ ଉକ୍ତ ସ୍ଥାନକୁ ଯାଇପାରେ । କୌଣସି ବିପଦ ପଡ଼ିଲେ ଉକ୍ତ ପିଲାଟି ଯେ ତାକୁ ରକ୍ଷା କରିପାରିବ, ଏହା ସମ୍ଭବ ନୁହେଁ । ବରଂ ବିପଦ ଉପସ୍ଥିତ ହେଲେ ପିଲାକୁ ରକ୍ଷା କରିବା, ଉକ୍ତ ଭୟାର୍ତ୍ତ ଲୋକର କର୍ତ୍ତବ୍ୟ ହୋଇ ପଡ଼ିବ । ତେଣୁ ବିପଦବେଳେ ପିଲାଠାରୁ ସାହାଯ୍ୟ ନପାଇ ବରଂ ତାକୁ ରକ୍ଷା କରିବାକୁ ସେ ବ୍ୟତିବ୍ୟସ୍ତରେ ପଡ଼ିବ । ଏହା ସତ୍ତ୍ୱେ ପିଲାଟି ସଙ୍ଗରେ ଥିଲେ, ସେ ଏକାକୀ ନଯାଇ ପାରୁଥିବା ସ୍ଥାନକୁ ସାହସର ସହିତ ଯାଇପାରେ । ପିଲାର ଉପସ୍ଥିତି ତା'ର ମନରେ ବଳ ଓ ସାହସ ଆଣିଦିଏ । ଭ୍ରାନ୍ତମନା ହୋଇଥିବାରୁ ତା'ଠାରେ ଏବମ୍ବିଧ ପ୍ରତିକ୍ରିୟା ଦେଖାଯାଏ । ଶଙ୍କାଗ୍ରସ୍ତ ଲୋକର ପ୍ରତିକ୍ରିୟା ଠିକ୍ ଏହି ଧରଣର । ଦୁର୍ବଳହେଲେ ସୁଦ୍ଧା, ତାକୁ

କଟେଣି ସାହାଯ୍ୟ କରିବାକୁ ଅଛନ୍ତି, ଏହି ଭାବନାରୁ ସେ ମନରେ ବଳ ଲାଭକରେ ଓ ନିଜର ଉଦ୍ୟମରେ ସଫଳ ହୁଏ ।

ଶଙ୍କା ଦୂର କରିବାର ଉପାୟ ଗୁଡ଼ିକ କହିବା ପୂର୍ବରୁ ଶଙ୍କାଶୀଳ ଲୋକର ମନର ଅବସ୍ଥା ପର୍ଯ୍ୟାଲୋଚନା କରି ଦେଖିବା ଉଚିତ ।

କ୍ରୋଧଯୁକ୍ତ ବ୍ୟକ୍ତି ଲୋକଙ୍କ ସଙ୍ଗେ ମିଳାମିଶା କରିବାକୁ ଭୟ କରେ । ସେ ନିଜର ଗୁରୁତ୍ୱକୁ ଅତିରଞ୍ଜନ କରି ଦେଖେ ଓ ସମସ୍ତଙ୍କର ଦୃଷ୍ଟି ତା' ଉପରେ ନିକ୍ଷିପ୍ତ ବୋଲି ଧାରଣା କରେ । ଏପରିକି ତାର ସାମାନ୍ୟ ଅଙ୍ଗ ସଞ୍ଚାଳନକୁ ପ୍ରତ୍ୟେକ ଲୋକ ନିର୍ନିମେଷ ନୟନରେ ଲକ୍ଷ୍ୟ କରୁଛନ୍ତି ବୋଲି ତାର ଦୃଢ଼ ବିଶ୍ୱାସ । ତେଣୁ ସେସବୁ ବିକୃତ ଦେଖାଗଲେ, ନିଜର ଗୁରୁତ୍ୱ ହ୍ରାସହେବ, ଏହି ଭୟରେ ସେ ସର୍ବଦା ଅଶଙ୍କିତ । ସେ ମାନସିକ ନିର୍ଜ୍ଜନତାରେ ରହି ଗୋଟିଏ ବିଷୟରେ ଭାବି ଭାବି ତାହାର ଭାବନାକୁ ଏପରି ଅତିରଞ୍ଜିତ କରି ପକାଏ ଯେ, ତାହା ମୂଳ ଭାବନାଠାରୁ ସମ୍ପୂର୍ଣ୍ଣ ଭିନ୍ନ ରୂପ ଓ ସମସ୍ତ ସମୟରେ ବାପରୀତ ରୂପ ଧାରଣ କରେ । ଅନ୍ୟ କାହାର ନିକଟରେ ନିଜର ଭାବନା ପ୍ରକାଶ କରୁ ନଥିବାରୁ ଓ ନିଜର ଏକ ଦେଶଦର୍ଶୀ ଗୁଣ ହେତୁ, ଉକ୍ତ ମୂଳ ଭାବନାର ଏରୂପ କ୍ରମ ପରିବର୍ତ୍ତନ ସେ ନିଜେ ବୁଝିପାରେ ନାହିଁ । ତେଣୁ ତାହାର ମତ ଓ ଧାରଣା ଗୁଡ଼ିକ ଅପ୍ରାକୃତ ଓ ଅସଙ୍ଗତ ହୋଇପଡ଼େ ।

ଶଙ୍କାନ୍ୱିତ ଲୋକ ଅପଣାର ମତ କାହାର ନିକଟରେ ପ୍ରକାଶ କରୁଥିବାବେଳେ ନିଜେ ଏହାର ଅସାରତ୍ୱ ଉପଲବ୍ଧି କରି ପାରିଲେ ଏହା ଅଗ୍ରାହ୍ୟ ହେବା ଭୟରେ ଅଶଙ୍କିତ ଓ ଅପ୍ରକୃତସ୍ଥ ହୋଇପଡ଼େ । ବାସ୍ତବ ବିବେଚନାର ଅଭାବରୁ ସେ ନିଜର ଭ୍ରାନ୍ତି ମୁକ୍ତ କରିବାରେ

ସ୍ୱୀକାର ନକରି ନାନାପ୍ରକାର ଅସାର ଯୁକ୍ତିରେ ସ୍ୱୀୟ ମତର ଉପାଦେୟତା ପ୍ରମାଣ କରିବାକୁ ଚେଷ୍ଟା କରିଥାଏ । ଏ ଉଦ୍ୟମ ଫଳରେ ଲୋକେ ତାହାର କଥାକୁ ଅଦ୍ଭୁତ ଅବିଶ୍ୱାସ କରନ୍ତି । କିନ୍ତୁ ଏ ଅବିଶ୍ୱାସର ଆଭାସ ପାଇଲେ, ସେ ରାଗରେ ଜଳିଉଠେ ଏବଂ ନାନାପ୍ରକାର ମିଥ୍ୟା ଓ କାଳ୍ପନିକ କଥାର ଅବତାରଣା କରି ନିଜ ମତର ସତ୍ୟତା ପ୍ରତିପାଦନ କରିବାକୁ ଚେଷ୍ଟାକରେ ।

ଏହିସବୁ ଦୁର୍ବଳତାରୁ ମୁକ୍ତି ଲାଭ କରିବାକୁ ଉତ୍ସାହ ଶଙ୍କାଗ୍ରସ୍ତର ସର୍ବାଦୌ ବାଞ୍ଛନୀୟ । ନିରପେକ୍ଷଭାବେ ଆତ୍ମପରୀକ୍ଷା ଓ ଆତ୍ମବେଷଣାନୁଶୀଳନ, ତାହାର ଏକାନ୍ତ ଆବଶ୍ୟକ । ଏଥିପାଇଁ ସନ୍ଧ୍ୟା ବା ପ୍ରଦୋଷ କାଳରେ ନିର୍ଜ୍ଜନ ପ୍ରକୋଷ୍ଠ ମଧ୍ୟରେ ଗୋଟିଏ ପଲଙ୍କ କିମ୍ବା ଆରାମ ଚୌକିରେ ଶାୟିତ ହେବ ଓ ନୟନ ମୁଦ୍ରଣ କରି ଶରୀରକୁ ନିର୍ଜୀବ ତୁଲ୍ୟ କରିଦେବ । ତତ୍‌ପରେ ମନରେ ସମସ୍ତଶକ୍ତି କେନ୍ଦ୍ରୀଭୂତ କରି ଏକାଗ୍ର ମନରେ ସେଦିନ ଦିନର ଘଟନା ଗୁଡ଼ିକ ସ୍ମରଣ କରିବ । ଅନ୍ୟକୌଣସି ଭାବନାକୁ ମନରେ ସ୍ଥାନ ଦେବ ନାହିଁ । ଆରାମଦାୟକ ଭାବେ ଶୟନ କରିବ, ନଚେତ୍ ଶାରୀରିକ ଅସ୍ୱସ୍ତି ଯୋଗେ ଭାବନା ବିକ୍ଷିପ୍ତ ହୋଇଯିବ ।

ପ୍ରତ୍ୟୁଷରେ ଶଯ୍ୟା ତ୍ୟାଗ କରିବାଠାରୁ ଭାବନା କରିବା ସମୟ ପର୍ଯ୍ୟନ୍ତ ସେଦିନ ଯାହା ଯାହା ଘଟିଥିବ, ଗୋଟି ଗୋଟି କରି ମନରେ ସ୍ମରଣ କରିବ । ଏହା ଟିକିଏ କଷ୍ଟସାଧ୍ୟ । ପ୍ରଥମ ଅବସ୍ଥାରେ ନାନା ଭାବନା ହଠାତ୍ ମନରେ ଉଦିତ ହୋଇ ଏକାଗ୍ରତା ଭାଙ୍ଗିଦିଏ । କିନ୍ତୁ ଧୈର୍ଯ୍ୟର ସହିତ ଏରୂପ ବିକ୍ଷିପ୍ତ ଚିନ୍ତାକୁ ସଙ୍ଗେ ସଙ୍ଗେ ମନରୁ ଦୂର କରି ମୂଳ ଭାବନାରେ ମନୋନିବେଶ କରିବ । ସେଦିନ ଦିନର ଘଟନା ଗୁଡ଼ିକର ସ୍ମରଣ ଯେଉଁଠାରୁ ଛାଡ଼ିଥିବ, ପୁଣି ସେଇଠାରୁ ଆରମ୍ଭ କରିବ । କୌଣସି

ବିଷୟ ବାଦ୍ ଦେବ ନାହିଁ । କୌଣସି ବିଷୟକୁ ଅତିରଞ୍ଜିତ ଭାବେ ଦେଖିବ ନାହିଁ । ନିରପେକ୍ଷ ଭାବେ ପ୍ରକୃତ ଯାହା ଘଟିଛି ସେହି କଥାକୁ ସ୍ମରଣ କରିବ ।

ପ୍ରଥମାବସ୍ଥାରେ ଏପରି ଉଦ୍ୟମ ବିଫଳ ହୁଏ । କିନ୍ତୁ ଅଧ୍ୟବସାୟ ସହକାରେ ଲାଗି ପଡ଼ିଲେ କ୍ରମେ କ୍ରମେ ଏଥିରେ ସଫଳତା ଲାଭ କରାଯାଏ । ପ୍ରାୟ ତରୁଣ ଗୁଳିଶଦନ ସାଧନା କଲେ, ଏ ରୂପ ଚିନ୍ତା କରିବାରେ ସିଦ୍ଧିଲାଭ ହୁଏ । ଏଥିରେ ପୂର୍ଣ୍ଣଭାବେ ସଫଳ ନହେବା ପର୍ଯ୍ୟନ୍ତ ଅନ୍ୟ କିଛି କରିବାକୁ ପ୍ରୟାସୀ ହେବା ଅନୁଚିତ । ଏ ରୂପ ଚିନ୍ତାରେ ସଫଳ ହେବାପରେ ସାଧନାର ପରବର୍ତ୍ତୀ ସମସ୍ୟାରେ ହସ୍ତକ୍ଷେପ କରାଯାଏ ।

ଦୈନନ୍ଦିନ ଘଟଣାଗୁଡ଼ିକ ସ୍ମରଣ କରିବାରେ ସିଦ୍ଧି ଲାଭ ହେଲେ, ସେ ଘଟଣା ଗୁଡ଼ିକରୁ ନିଜର ଦୋଷଗୁଡ଼ିକ ବାଛିବାକୁ ଚେଷ୍ଟା କରିବ । ଏହା ଟିକିଏ କଷ୍ଟସାଧ୍ୟ । ପ୍ରଥମରେ ଭ୍ରମରେ ପଡ଼ିବାକୁ ହୁଏ । କିନ୍ତୁ ବାରମ୍ବାର ନିରପେକ୍ଷ ମନରେ, ବିଶେଷତଃ ଉକ୍ତ ଘଟଣାଗୁଡ଼ିକ ସଙ୍ଗେ ନିଜେ ସମ୍ପୃକ୍ତ ନଥିବା ମନେକରି ଉହିଁର ଅନୁଶୀଳନ କଲେ କ୍ରମେ କ୍ରମେ ନିଜର ଦୋଷ ଗୁଡ଼ିକ ବୁଝି ହୁଏ । ଏତିକି ବୁଝିପାରିଲେ, ଦୈନିକ ଗୋଟିଏ ପରେ ଗୋଟିଏ ଦୋଷ ଦୂର କରିବାକୁ ଦୃଢ଼ ସଂକଳ୍ପ କରିବା ଉଚିତ । ଏକ ସମୟରେ ସବୁ ଦୋଷ ଦୂର କରିବାକୁ ପ୍ରୟାସ କରିବା ଅନୁଚିତ ।

ଯେଉଁ ଦୋଷଟିର ଦୂରୀକରଣ ପାଇଁ ସଂକଳ୍ପ କରାଯାଏ, ସେ ଦୋଷ ସଙ୍ଗେ ସମ୍ପୃକ୍ତ ଘଟଣାର ବିଶଦ୍ ଅନ୍ୱେଷଣା କରିନେବା ଉଚିତ । ଉକ୍ତ ଘଟଣାରେ କିପରି ଭାବେ ବ୍ୟବହାର କରିଥିଲେ ତୁମେ ନିର୍ଦୋଷ ହୋଇଥାନ୍ତ, ତାହା ସ୍ଥିର କରିନେବ । ମନେକର ଯଦି ତୁମର ବନ୍ଧୁ ତୁମକୁ ଅତର ଅଭ୍ୟର୍ଥନା କରିବା

ବେଳେ ତୁମ୍ଭେ ଶଙ୍କା ବଶତଃ ତାଙ୍କୁ ଯଥାଯଥ ଭାବେ ସ୍ନେହ ଓ ଧନ୍ୟବାଦ ଅର୍ପଣ କରି ନପାରି ନୀରବ ଓ ମଉନ ରହୁଛ, କିମ୍ବା କେହି କୌଣସି ବିଷୟରେ ସମାଲୋଚନା କରିବା ବେଳେ ତୁମେ ତୁମ୍ଭର ମତ ବ୍ୟକ୍ତ ନକରି କିମ୍ବା ପ୍ରତିବାଦ ନକରି ନୀରବ ରହୁଛ, ତେବେ ସେସବୁ ଘଟଣାରେ ତୁମେ କଣ କଣ କହିଥାନ୍ତ, ସେ ସବୁ ମନେ ମନେ ସ୍ଥିର କରିନେବ । ତତ୍ପରେ ସେ ସବୁ ଘଟଣା ଯେପରି ଉପସ୍ଥିତରେ ଘଟୁଛି ଅର୍ଥାତ୍ ତୁମ୍ଭ ବନ୍ଧୁ ତୁମ୍ଭଙ୍କୁ ଆଦର ଅଭ୍ୟର୍ଥନା କରୁଛନ୍ତି, ଏହିପରି ଭାବି ଧୀରେ ଧୀରେ ତୁମ୍ଭର ଉତ୍ତର ସ୍ପଷ୍ଟ ଉଚ୍ଚାରଣ କରିବ । ଏପରି ଅଭିନୟ କରିବାରେ ତୁମ୍ଭେ ଯେପରି ଅସ୍ପଷ୍ଟ କିମ୍ବା ଅନୁନାସିକ ଭାବେ ନକୁହ ସେଥିପ୍ରତି ଦୃଷ୍ଟି ଦେବ ।

ଯଦି କୌଣସି ଘଟଣାରେ କୌଣସି ବିଷୟ ନେଇ ତୁମେ ଅତିରଞ୍ଜିତ ଭାବେ କହୁଥାଅ, ତେବେ ସେ ଅତିରଞ୍ଜନ ମଧ୍ୟରେ ପ୍ରକୃତ ସତ୍ୟ କଣ, ସେ କଥା ନିଜର ମନକୁ ପ୍ରଶ୍ନ କରିବ । ଅନେକ ସମୟରେ ପ୍ରକୃତ ସତ୍ୟ କଥାଟି ମନେକରି, ତାହା ସଙ୍ଗେ ଅତିରଞ୍ଜିତ କଥାକୁ ତୁଳନା କଲେ ସରମରେ ମୁଖ ଅବନତ ହୁଏ । କିନ୍ତୁ ଏପରିଭାବେ ଲଜ୍ଜିତ ହୋଇ ହତୋତ୍ସାହ ଓ ବିଷଣ୍ଣ ହେବନାହିଁ । ବରଂ କୌଣସି ବିଷୟର ଅତିରଞ୍ଜନ କରି ପ୍ରକାଶ ନକରିବାକୁ ଦୃଢ଼ତାର ସହିତ ପ୍ରତିଜ୍ଞା କରିବ ।

ଏହିପରି ଭାବେ ଧୈର୍ଯ୍ୟର ସହିତ ସାଧନା କଲେ ଗୋଟିଏ ପରେ ଗୋଟିଏ ଦୋଷ ଦୂର କରି ହେବ । କ୍ରମେ କ୍ରମେ ସଫଳତା ଲାଭ ହେଲେ ମନୋବଳ ଓ ଆତ୍ମପ୍ରତ୍ୟୟ ଫେରି ଆସିବ, ନିଜର ଭାବନା ଉପରେ ଅଧିକାର ଆସିବ । ଚିନ୍ତାଧାରାର ଗତି ପରିଚାଳିତ ଓ ନିୟନ୍ତ୍ରିତ କରିବାକୁ ଶକ୍ତି ଲାଭ ହେବ । ଲୋକ ମାନସିକ

ଦୁର୍ବଳତାର ଦାସ ନହୋଇ, ସେ ସବୁର ପ୍ରଭୁ ହେବ ଏବଂ କ୍ରମେ କ୍ରମେ ଉକ୍ତ ଦୁର୍ବଳତା ଦୂର କରିବାକୁ ସମର୍ଥ ହେବ ।

ସାଧନାରେ ଏତିକି ଦୂର ଅଗ୍ରସର ହେବା ପରେ, ଯେଉଁ ଦୋଷଗୁଡ଼ିକ ଦୂର ହେଲା, ତାହା ଯେପରି ପୁନର୍ବାର ପ୍ରଶ୍ରୟ ନପାଏ, ସେଥିପ୍ରତି ସତର୍କ ରହିବାକୁ ପଡ଼ିବ ।

ଏହାପରେ ତୁମେ ଯେଉଁ ଘଟନାରେ ଅତିରଞ୍ଜନ କରି କହିଥିଲ, ସେପରି ଗୋଟିଏ ଘଟନା ସ୍ମରଣ କରିବ । ସେ ଘଟନାରେ ତୁମେ ପ୍ରକୃତରେ ଯେଉଁ ଶବ୍ଦଗୁଡ଼ି ବ୍ୟବହାର କରିଥିଲ, ଯେତେଦୂର ପାର ଗୋଟି ଗୋଟି ସେ ସମସ୍ତ ଶବ୍ଦକୁ ସ୍ମରଣ କରିବ । ସେ ପଦଗୁଡ଼ି ସ୍ମରଣ କରି, ତୁମେ ଯେଉଁ ବାକ୍ୟ ବ୍ୟବହାର କରିଥିଲ, ସେହି ବାକ୍ୟ ଗୁଡ଼ିକ ଖୁବ୍ ଉଚ୍ଚକଣ୍ଠରେ ବାରମ୍ବାର ଉଚ୍ଚାରଣ କରିବ । ଏପରି କଲେ ତାହା କିପରି ଅସାର ଓ ବାଳସୁଲଭ, ତାହା ତୁମେ ହୃଦୟଙ୍ଗମ କରି ପାରିବ । ତଦନନ୍ତର ସେ ଘଟନାରେ ଅତିରଞ୍ଜନ ନକରି ସାର କଥା ରୂପେ କଣ କହିବା ତୁମର ଉଚିତ ଥିଲା, ତାହା ଭାବି ସ୍ଥିର କରିବ । ଏହି ସ୍ଥିରୀକୃତ ବାକ୍ୟଗୁଡ଼ିକୁ ପୂର୍ବ ପ୍ରକାରେ ବାରମ୍ବାର ଉଚ୍ଚାରଣ କରିବ । ପରେ ବନ୍ଧୁବାନ୍ଧବମାନଙ୍କ ଅଗ୍ରତରେ ଉକ୍ତ ବାକ୍ୟଗୁଡ଼ିକୁ ଉଚ୍ଚାରଣ କରିବ ।

ଭବିଷ୍ୟତରେ ଏହିପରି କୌଣସି ଘଟନା ଉପସ୍ଥିତ ହେଲେ, ଅତିରଞ୍ଜନ ନକରି କିପରି ଯଥାଯଥ ଉତ୍ତର ଦେବ, ତାହା ସ୍ଥିର କରିନେବ । ପ୍ରଥମେ ଉକ୍ତ ଉତ୍ତରକୁ ନିର୍ଜନରେ ବାରମ୍ବାର ଉଚ୍ଚାରଣ କରିବ । ପରେ ଅନ୍ୟଲୋକଙ୍କ ସମ୍ମୁଖରେ ସେ ସବୁ ନିଃଶଙ୍କ ମନରେ ଉଚ୍ଚାରଣ କରିବ । ପ୍ରକାଶ କରିବାରେ ଯେପରି ଅସ୍ପଷ୍ଟ ନହୁଏ, ସେଥିପ୍ରତି ଦୃଷ୍ଟିଦେବ ।

ଶେଷରେ ଯେ କୌଣସି ବିଷୟକୁ ଅତିରଞ୍ଜନ ନ କରିବାକୁ ପ୍ରତିଜ୍ଞା କରିବ । ପ୍ରତିବାଦ ବା ଯୁକ୍ତିତର୍କ କରିବାବେଳେ ଧୀର ସ୍ଥିର ଚିତ୍ତରେ ନିରପେକ୍ଷ ଭାବେ ଅନ୍ୟର ମତାମତ ଶୁଣି ଯିବାକୁ ଓ ସଂକ୍ଷେପରେ ସାରକଥାରେ ସେ ସମସ୍ତ ଯଥାଯଥ ଖଣ୍ଡନ କରିବାକୁ ସ୍ଥିର ସଂକଳ୍ପ କରିବ ।

ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ନିଜ ପ୍ରତିଜ୍ଞାର ଦୃଢ଼ତା ପରୀକ୍ଷା କରି ନେବାକୁ ଚେଷ୍ଟା କରିବ । ଉଦାହରଣ ସ୍ୱରୂପ ବନ୍ଧୁମାନଙ୍କର ଆଦର ଅଭ୍ୟର୍ଥନାବେଳେ ତୁମେ ନୀରବ ନମ୍ର ଭାବରେ ଯୁକ୍ତିଯୁକ୍ତ ଉତ୍ତର ଦେବାକୁ ହେବ, ତାହା ପରୀକ୍ଷା କରିବାକୁ ହେଲେ, ଇଚ୍ଛା କରି କୌଣସି ବନ୍ଧୁଙ୍କ ଘରକୁ ଯିବ । ଦେଖା ସାକ୍ଷାତ ବେଳେ ତୁମେ କପରି ଓ କଣ କଥାବାର୍ତ୍ତା କରିବ, ତାହା ଆବଶ୍ୟକ ପୂର୍ବରୁ ସ୍ଥିର କରିଥିବ । ବନ୍ଧୁଙ୍କ ଗୃହକୁ ଯାଇ, ତାଙ୍କ ସଙ୍ଗେ ଦେଖାକରି, ସାହସର ସହିତ ପୂର୍ବରୁ ସ୍ଥିର କରିଥିବା ମତେ କଥାଭାଷା କରିବ । ଫେରି ଆସି ସେହିଦିନ ରାତିରେ ଦୈନିକ ଘଟଣାର ସ୍ମରଣ ଓ ଅନୁଶୀଳନ ବେଳେ ଦେଖିବ, ତୁମ୍ଭେ ବନ୍ଧୁଙ୍କ ସଙ୍ଗେ ଦେଖା ସାକ୍ଷାତ କଲାବେଳେ କଥାଭାଷାରେ କିଛି ଭୁଲ୍ କରିଛ କି ନାହିଁ । କିଛି ଭୁଲ୍ କରିଥିଲେ ତାହା ସଂଶୋଧନ କରି ନେବାକୁ ଉପଯୁକ୍ତ ମତେ ଚେଷ୍ଟା କରିବ ।

ଯଦି କୌଣସି ଘଟଣାରେ ତୁମ୍ଭେ କାହାର ଉପରେ ଉତ୍ତ୍ୟକ୍ତ ଓ ବିରକ୍ତ ହୋଇଥାଅ, ତେବେ ସେ ଦିନର ଘଟଣା ସ୍ପଷ୍ଟ ସ୍ମରଣ କରିବା ବେଳେ, ଉତ୍ତ୍ୟକ୍ତ ହେବାର କି କାରଣ ଥିଲା, ତାହା ଦେଖିବ । ଏପରି କଲେ ବାଳ ସୁଲଭ ଅସାର କଥାରେ କିପରି ତୁମେ ମନର ଧୈର୍ଯ୍ୟ ହରାଇଥିଲ, ତାହା ବୁଝିପାରିବ । ଭବିଷ୍ୟତରେ ଏପରି ଘଟଣାରେ କ୍ରୁଦ୍ଧ ନହେବାକୁ ପ୍ରତିଜ୍ଞା କରିବ । ଅଳ୍ପ ମଧ୍ୟ

ପରଦିନ ସେହିପରି ଘଟଣା ସୃଷ୍ଟି କରିବାକୁ ଚେଷ୍ଟା କରିବ ଏବଂ ସେ ସମୟରେ ପୂର୍ବ ପ୍ରତିଜ୍ଞା ସ୍ମରଣ କରି ଉତ୍ତ୍ୟକ୍ତ ନହୋଇ ଧୀର ସ୍ଥିର ରହିବ । ଏହିପରି କଲେ କ୍ରୋଧ ସଂଯମ କରି ଶାନ୍ତ ରହିବାକୁ ଅଭ୍ୟସ୍ତ ହୋଇଯିବ ।

ନିଜର ଆଚରଣ ଅନୁଶୀଳନ କରୁ କରୁ ଯଦି ଦେଖ ଯେ କୌଣସି ଘଟଣାରେ ଅତ୍ୟନ୍ତ ଲଜ୍ଜା, ସଂକୋଚ ବା ଶଙ୍କାରୁ ତୁମର ମୁଖ ରଙ୍ଗା ପଡ଼ି ଯାଇଥିଲା, ତେବେ ସେ ଘଟଣାକୁ ତୁମେ ବାରମ୍ବାର ସ୍ମରଣ କରିବ ଓ ଯେଉଁ କଥାରେ ତୁମର ଏ ଦୁର୍ଲକ୍ଷଣ ଜାତ ହୋଇଥିଲା, ସେ କଥାକୁ ବାରମ୍ବାର ଉଚ୍ଚାରଣ କରିବ । ଧୈର୍ଯ୍ୟର ସହିତ ଏପରି କଲେ କ୍ରମେ ତୁମର ସେ ଦୁର୍ଲକ୍ଷଣ ଜାତ ହେବ ନାହିଁ । ତା'ପରେ ପୁନ ସେହି ପ୍ରକାରର ଘଟଣା ସୃଷ୍ଟି କରିବାକୁ ଚେଷ୍ଟା କରିବ ଏବଂ ସେତେବେଳେ ନିଜର ପ୍ରତିଜ୍ଞା ସ୍ମରଣ କରି ଦୃଢ଼ ମନରେ ସାହାସର ସହିତ ଚେଷ୍ଟା କରିବ ଯେପରି ମୁଖ ବିବର୍ଣ୍ଣ ନହୁଏ । ଏହିପରି କେତେଥର ଚେଷ୍ଟାକଲେ, ଏ ଦୋଷ ଦୂର ହୋଇଯାଏ ।

ନିର୍ଜନରେ ନରହି ବନ୍ଧୁବାନ୍ଧବ ଓ ଲୋକମାନଙ୍କ ସଙ୍ଗେ ମିଳାମିଶା କରିବାକୁ ଚେଷ୍ଟାକରିବ । କୌଣସି ବିଷୟରେ ନିଜର ମତାମତ ଓ ଭାବନାକୁ ଅନ୍ୟମାନଙ୍କ ନିକଟରେ ପ୍ରକାଶ କରିବ । ଯଦି ସେ ବିଷୟ ଗୋପନୀୟ ହୋଇଥାଏ, ତେବେ ବିଶ୍ୱାସୀ ବନ୍ଧୁଙ୍କ ନିକଟରେ ପ୍ରକାଶ କରିବ । କାରଣ ଭାବନାକୁ ଗୋପନ ରଖିଲେ ଓ ମାନସିକ ନିର୍ଜନତାରେ ସେ ବିଷୟରେ ଚିନ୍ତାକଲେ, ତାହା କ୍ରମେ ଅତିରଞ୍ଜିତ ହୋଇ ଉଗ୍ର ଆକାର ଧାରଣ କରେ ।

ଏହିପରି ଆତ୍ମ-ଚରିତ୍ରାନୁଶୀଳନ କରି ନିଜକୁ ସଂଶୋଧନ କରୁଥିବାବେଳେ ଲୋକଙ୍କର ଦୃଷ୍ଟି ଆକର୍ଷଣ କରି ପ୍ରଶଂସା ଲଭ

ବୈଶଖରେ ଯେ କୌଣସି ବିଷୟକୁ ଅତିରଞ୍ଜନ ନ କରିବାକୁ ପ୍ରତିଜ୍ଞା କରିବ । ପ୍ରତିବାଦ ବା ଯୁକ୍ତିତର୍କ କରିବାବେଳେ ଧୀର ସ୍ଥିର ଚିତ୍ତରେ ନିରପେକ୍ଷ ଭାବେ ଅନ୍ୟର ମତାମତ ଶୁଣି ଯିବାକୁ ଓ ସଂକ୍ଷେପରେ ସାରକଥାରେ ସେ ସମସ୍ତ ଯଥାଯଥ ଖଣ୍ଡନ କରିବାକୁ ସ୍ଥିର ସଂକଳ୍ପ କରିବ ।

ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ନିଜ ପ୍ରତିଜ୍ଞାର ଦୃଢ଼ତା ପରୀକ୍ଷା କରି ନେବାକୁ ଚେଷ୍ଟା କରିବ । ଉଦାହରଣ ସ୍ୱରୂପ ବନ୍ଧୁମାନଙ୍କର ଆଦର ଅଭ୍ୟର୍ଥନାବେଳେ ତୁମେ ଜାତିର ନରିଦ୍ଧ କପରି ଯୁକ୍ତିଯୁକ୍ତ ଉତ୍ତର ଦେବାକୁ ହେବ, ତାହା ପରୀକ୍ଷା କରିବାକୁ ହେଲେ, ଇଚ୍ଛା କରି କୌଣସି ବନ୍ଧୁଙ୍କ ଘରକୁ ଯିବ । ଦେଖା ସାକ୍ଷାତ ବେଳେ ତୁମେ କପରି ଓ କଣ କଥାବାର୍ତ୍ତା କରିବ, ତାହା ଭାବଚିନ୍ତା ପୂର୍ବରୁ ସ୍ଥିର କରିଥିବ । ବନ୍ଧୁଙ୍କ ଗୃହକୁ ଯାଇ, ତାଙ୍କ ସଙ୍ଗେ ଦେଖାକରି, ସାହସର ସହିତ ପୂର୍ବରୁ ସ୍ଥିର କରିଥିବା ମତେ କଥାଭାଷା କରିବ । ଫେରି ଆସି ସେହିଦିନ ରାତିରେ ଦୈନିକ ଘଟନାର ସ୍ମରଣ ଓ ଅନୁଶୀଳନ ବେଳେ ଦେଖିବ, ତୁମ୍ଭେ ବନ୍ଧୁଙ୍କ ସଙ୍ଗେ ଦେଖା ସାକ୍ଷାତ କଲାବେଳେ କଥାଭାଷାରେ କିଛି ଭୁଲ୍ କରିଛ କି ନାହିଁ । କିଛି ଭୁଲ୍ କରିଥିଲେ ତାହା ସଂଶୋଧନ କରି ନେବାକୁ ଉପ-ଯୋଗ୍ଯ ମତେ ଚେଷ୍ଟା କରିବ ।

ଯଦି କୌଣସି ଘଟନାରେ ତୁମ୍ଭେ କାହାର ଉପରେ ବିରକ୍ତ ଓ ବିରକ୍ତ ହୋଇଥାଅ, ତେବେ ସେ ଦିନର ଘଟନା ଗୁଡ଼ିକ ସ୍ମରଣ କରିବା ବେଳେ, ଉତ୍ତ୍ୟକ୍ତ ହେବାର କି କାରଣ ଥିଲା, ତାହା ଦେଖିବ । ଏପରି କଲେ ବାଜେ ସୁଲଭ ଅସାର କଥାରେ କପରି ତୁମେ ମନର ଧୈର୍ଯ୍ୟ ହରାଇଥିଲ, ତାହା ବୁଝିପାରିବ । ଭବିଷ୍ୟତରେ ଏପରି ଘଟନାରେ ବିକ୍ଷୁବ୍ଧ ନହେବାକୁ ପ୍ରତିଜ୍ଞା କରିବ । ଅଳ୍ପ ମଧ୍ୟ

ପରନ୍ଧନ ସେହିପରି ଘଟନା ସୃଷ୍ଟି କରିବାକୁ ଚେଷ୍ଟା କରିବ ଏବଂ ସେ ସମୟରେ ପୂର୍ବ ପ୍ରତିଜ୍ଞା ସ୍ମରଣ କରି ଉତ୍ତେଜିତ ନହୋଇ ଧୀର ସ୍ଥିର ରହିବ । ଏହିପରି କଲେ କ୍ରୋଧ ସଂଯମ କରି ଶାନ୍ତ ରହିବାକୁ ଅଭ୍ୟସ୍ତ ହୋଇଯିବ ।

ନିଜର ଅଚରଣ ଅନୁଶୀଳନ କରୁ କରୁ ଯଦି ଦେଖ ଯେ କୌଣସି ଘଟଣାରେ ଅତ୍ୟନ୍ତ ଲଜ୍ଜା, ସଂକୋଚ ବା ଶଙ୍କାରୁ ତୁମର ମୁଖ ରଙ୍ଗା ପଡ଼ି ଯାଇଥିଲା, ତେବେ ସେ ଘଟନାକୁ ତୁମେ ବାରମ୍ବାର ସ୍ମରଣ କରିବ ଓ ଯେଉଁ କଥାରେ ତୁମର ଏ ବିଲକ୍ଷଣ ଭାବ ହୋଇଥିଲା, ସେ କଥାକୁ ବାରମ୍ବାର ଉଚ୍ଚାରଣ କରିବ । ଧୈର୍ଯ୍ୟର ସହିତ ଏପରି କଲେ କ୍ରମେ ତୁମର ସେ ବିଲକ୍ଷଣ ଭାବ ହେବ ନାହିଁ । ତା'ପର ପୁନ ସେହି ପ୍ରକାରର ଘଟନା ସୃଷ୍ଟି କରିବାକୁ ଚେଷ୍ଟା କରିବ ଏବଂ ସେତେବେଳେ ନିଜର ପ୍ରତିଜ୍ଞା ସ୍ମରଣ କରି ଦୃଢ଼ ମନରେ ସାହାସର ସହିତ ଚେଷ୍ଟା କରିବ ଯେପରି ମୁଖ ବିବର୍ଣ୍ଣ ନହୁଏ । ଏହିପରି କେତେଥର ଚେଷ୍ଟାକଲେ, ଏ ଦୋଷ ଦୂର ହୋଇଯାଏ ।

ନିର୍ଜନରେ ନରହି ବନ୍ଧୁ ବାନ୍ଧବ ଓ ଲୋକମାନଙ୍କ ସଙ୍ଗେ ମିଳାମିଶା କରିବାକୁ ଚେଷ୍ଟାକରିବ । କୌଣସି ବିଷୟରେ ନିଜର ମତାମତ ଓ ଭାବନାକୁ ଅନ୍ୟମାନଙ୍କ ନିକଟରେ ପ୍ରକାଶ କରିବ । ଯଦି ସେ ବିଷୟ ଗୋପନୀୟ ହୋଇଥାଏ, ତେବେ ବିଶ୍ୱାସୀ ବନ୍ଧୁଙ୍କ ନିକଟରେ ପ୍ରକାଶ କରିବ । କାରଣ ଭାବନାକୁ ଗୋପନ ରଖିଲେ ଓ ମାନସିକ ନିର୍ଜନତାରେ ସେ ବିଷୟରେ ଚିନ୍ତାକଲେ, ତାହା କ୍ରମେ ଅତିରଞ୍ଜିତ ହୋଇ ଉଗ୍ର ଅକାର ଧାରଣ କରେ ।

ଏହିପରି ଅତ୍ମ-ଚରିତ୍ରାନୁଶୀଳନ କରି ନିଜକୁ ସଂଶୋଧନ କରୁଥିବାବେଳେ ଲୋକଙ୍କର ଦୃଷ୍ଟି ଆକର୍ଷଣ କରି ପ୍ରଶଂସା ଲଭ

କରିବାକୁ ଗୋଟାଏ କଣ୍ଟ୍ରୁ ବଶିଷ୍ଟ ଭାମ କରିବାକୁ ଶଙ୍କିତ ଲୋକର ମନରେ ଭାବନା ଜାତ ହୁଏ । ଏହୁ ଅବାଞ୍ଛାର ଉତ୍ପତ୍ତି ସ୍ଥଳ ଖୋଜିଁଠି, ସେ ବିଷୟୁ ଦୈନିକ ଘଟନାର ଅଲୋଚନା ବେଳେ ଚିନ୍ତା କରି ଦେଖିଲେ, ଏହା କିପରି ବାଲ୍ୟସୁଲଭ ତାହା ହୃଦୟଙ୍ଗମ କରିହୁଏ ଓ କମେ ଏରୂପ ଚିନ୍ତା ଦୂରୀଭୂତ ହୁଏ ।

ଏହିରୂପେ କଣ୍ଟ୍ରୁ ଦିନ ସାଧନା କରି କେତେକ ପରିମାଣରେ ନିଜର ମନ ଉପରେ ଅଯୁକ୍ତ ବିସ୍ତାର କରିବାପରି, ଶଙ୍କା ଯୋଗେ ନିଜର ଯେ ବିଲକ୍ଷଣ ଉପସ୍ଥିତ ହୁଏ, ତାହା ଦୂର କରିବାକୁ ବିଶେଷ ଉଦ୍ୟମ କରିବାକୁ ହେବ । ଅନ୍ୟମାନଙ୍କ ସମ୍ମୁଖରେ ଶଙ୍କାଜନିତ ନିଜର ବିକୃତ ଅଙ୍ଗଭଙ୍ଗୀ, ମାନସିକ ଅସ୍ୱାଚ୍ଛନ୍ଦ୍ୟ, ବିଖଣ୍ଡିତ ବାକ୍ୟ, ସ୍ଫୂର୍ତ୍ତି ଓ ବିଚକ୍ଷଣତାର ଅଭାବ, ଏ ସବୁ ଦୋଷ ଦୂର କରିବାକୁ ଯତ୍ନ କରିବ ।

ଯଦି କୌଣସି ସଭା ସମିତିରେ ଯୋଗ ଦାନ କରିବାକୁ ଥାଏ, ତେବେ ପୂର୍ବରୁ ସେ ବିଷୟରେ ଭଲରୂପେ ଭାବନା କରିବ । ସେଠାରେ ଉପସ୍ଥିତ ହୋଇ, କିପରି ଭାବେ ବସିବ, ଉଠିବ, କଥାବାର୍ତ୍ତା କରିବ, ଏସବୁ ଭାବ ପୂର୍ବରୁ ଠିକ୍ କରିନେବ । ଭାବିଲାବେଳେ ମନେ କରିନେବ ଯେପରି ଉପସ୍ଥିତରେ ସଭା ହେଉଛି ଓ ନିଜେ ସେଥିରେ ଯୋଗ ଦେଇଛ । ବାରମ୍ବାର ଏହିପରି ଭାବିବା ଦ୍ୱାରା ଅପଣାର ମାନସିକ ଅସ୍ୱାଚ୍ଛନ୍ଦ୍ୟ ଦୂରୀଭୂତ ହେବ ।

ବିକୃତ ଅଙ୍ଗଭଙ୍ଗୀ ଦୂର କରିବା ନିମନ୍ତେ ପ୍ରଥମେ ନିର୍ଜ୍ଜନରେ ସ୍ୱଚ୍ଛନ୍ଦଭାବେ ନିଃଶଙ୍କ ମନରେ ଚଳାଚଳ କରିବ । ବସିବା, ଠିଆହେବା, ଚାଲିବା, ମୁହାଁମୁହିଁ ଲୋକମାନଙ୍କୁ ଚାହିଁବା, ଅଙ୍ଗପ୍ରତ୍ୟଙ୍ଗ ସଞ୍ଚାଳନ କରିବା ପ୍ରଭୃତି ନିର୍ଜ୍ଜନରେ ବାରମ୍ବାର ଅଭ୍ୟାସ କରିବ । ଏ ସବୁ କରିବାବେଳେ ମନେ କରିବ ଯେପରି

ପ୍ରକୃତଘଟଣା ସ୍ଥଳରେ ଏ ସବୁ କରୁଛ । ମନେକର କୌଣସି ବନ୍ଧୁଙ୍କ ଘରକୁ ଗଲେ ତାଙ୍କସଙ୍ଗେ କିପରି କଥାବାର୍ତ୍ତା କରିବ, ସେ ବିଷୟରେ ଅଭ୍ୟାସ କରୁଛ । ତେବେ ନିଜଘରକୁ ବନ୍ଧୁଙ୍କ ଘର ବୋଲି ଭାବିନେବ । ବନ୍ଧୁଙ୍କ ଗୃହକୁ ଯିବାପରି ବାହାରୁ ଆପଣାର ଘର ଭିତରକୁ ପ୍ରବେଶ କରିବ । ମନେ କରିବ ସେ ଗୃହ ମଧ୍ୟରେ ବନ୍ଧୁଙ୍କୁ ସାକ୍ଷାତ୍ କଲ । ତା'ପରେ କିପରି ଅଙ୍ଗଭଙ୍ଗୀ କରି, କି କି ବାକ୍ୟ ଉଚ୍ଚାରଣ ପୂର୍ବକ ତାଙ୍କ ସଙ୍ଗେ ଆଳାପ କରିବ, ସେ ସବୁର ଅଭିନୟ କରିବ । ବାରମ୍ବାର ସେପରି ଅଙ୍ଗସଞ୍ଚାଳନ ଓ ବାକ୍ୟୋଚ୍ଚାରଣ କରି ସେଥିରେ ଅଭ୍ୟସ୍ତ ହେବାକୁ ଚେଷ୍ଟା କରିବ ।

ତହିଁ ଆରଦିନ ପ୍ରକୃତରେ କୌଣସି ବନ୍ଧୁଙ୍କ ଗୃହକୁ ଯାଇ ତାଙ୍କ ସଙ୍ଗେ ସାକ୍ଷାତ୍ ଓ ଆଳାପନ କରି ପରୀକ୍ଷା କରିନେବ, ଆପଣାର ସାଧନା କେତେଦୂର ସିଦ୍ଧି ହୋଇଛି । ଆଳାପନ ବେଳେ କଥାବାର୍ତ୍ତାରେ କିମ୍ବା ଅଙ୍ଗଭଙ୍ଗୀରେ କୌଣସି କୁଲକ୍ଷଣ ପରିଦୃଷ୍ଟ ହେଉଛି କି ନାହିଁ ସେଥିପ୍ରତି ଦୃଷ୍ଟିଦେବ । ଯଦି କିଛି ଦୋଷଥିବାର ଦେଖ, ତେବେ ଫେରିଆସି ପୂର୍ବୋକ୍ତମତେ ପୁନର୍ବାର ଅଭ୍ୟାସ କରିବ । ପୁଣିଥରେ କୌଣସି ବନ୍ଧୁଙ୍କ ନିକଟକୁ ଆଳାପ କରିବାକୁ ଯାଇ, କେତେଦୂର ସଫଳ ହୋଇଛ ତାହା ପରୀକ୍ଷା କରିନେବ । ଏହିପରି ପ୍ରତ୍ୟେକ ବିଷୟରେ ପ୍ରଥମେ ନିର୍ଜ୍ଜନରେ ଅଭ୍ୟାସ କରିବ ଓ ପରେ କାର୍ଯ୍ୟ କ୍ଷେତ୍ରରେ ତା'ର ପରୀକ୍ଷା କରିବ । ଏହିରୂପେ ଧୈର୍ଯ୍ୟ ଓ ଅଧ୍ୟବସାୟ ସହକାରେ ବାରମ୍ବାର ସାଧନା କଲେ, ସକଳ ଦୋଷ ଦୂର ହୋଇଯିବ ।

ରାଜପଥରେ ହଠାତ୍ କୌଣସି ବନ୍ଧୁଙ୍କୁ ଭେଟିଲେ, ତାଙ୍କ-ସଙ୍ଗେ କିପରି ଆଳାପ ଆରମ୍ଭ କରିବ ସେ ବିଷୟରେ ପୂର୍ବରୁ

ସାଧନା କର ଅଭ୍ୟସ୍ତ ହେବ । ତା'ପରେ ରାଜପଥରେ ପ୍ରକୃତ ଯେତେବେଳେ ବନ୍ଧୁମାନଙ୍କୁ ଦେଖିବ, ସେତେବେଳେ ତାହା ପରୀକ୍ଷା କରିନେବ । ପ୍ରଥମେ ଶାରୀରିକ ସ୍ୱାସ୍ଥ୍ୟ ପ୍ରଭୃତି ବିଷୟରେ ସରଳଭାବେ ଅଳ୍ପ କେତୋଟି ପ୍ରଶ୍ନ କରିବ । ପରେ ଅଭ୍ୟସ୍ତ ହୋଇଗଲେ ଓ ସାହାସ ବୃଦ୍ଧି ହେଲେ ଦୀର୍ଘ ଆଲାପ କରିବ ।

ଅପରିଚିତ ଲୋକଙ୍କ ମୁଖକୁ ସାହସର ସହିତ ମୁହାଁମୁହିଁ ଚାହିଁବ । ଆରମ୍ଭରେ ବେଶୀ ସମୟ ଦୃଷ୍ଟି ସ୍ଥିର କରି ପାରିବ ନାହିଁ । କିନ୍ତୁ ନିଜର ପ୍ରତିଜ୍ଞା ସ୍ମରଣ କରି ଦୃଢ଼ଭାବେ ମୁହାଁମୁହିଁ ଚାହିଁବାକୁ ବାରମ୍ବାର ଚେଷ୍ଟାକଲେ, ଏଥିରେ ସଫଳ ହେବ ।

ଆଲାପନ କରିବାବେଳେ ତୁମର ବାକ୍‌ରୋଧ ହେଲେ କମ୍ପା ସ୍ୱର ଅନୁନାସିକ ହେଲେ, ନିର୍ଜନରେ ଦୈନିକ ଘଟଣାର ଆଲୋଚନାବେଳେ ସେସବୁ ବାକ୍ୟଗୁଡ଼ି ଉଚ୍ଚାରଣ କରିବ । ପ୍ରଥମେ ଧୀରେ ଧୀରେ ଉଚ୍ଚାରଣ କରିବ, ପରେ ଉଚ୍ଚକଣ୍ଠରେ ଉଚ୍ଚାରଣ କରିବ । ପୁଣି ତହିଁ ଆରଦିନ ସେ ବାକ୍ୟଗୁଡ଼ିକ ଅନ୍ୟମାନଙ୍କ ସମ୍ମୁଖରେ ଉଚ୍ଚାରଣ କରି, ସାଧନା କେତେଦୂର ସଫଳ ହୋଇଛି, ତାହା ପରୀକ୍ଷା କରିନେବ । କିଛି ଦୋଷଥିଲେ ପୁନର୍ବାର ଅଭ୍ୟାସ କରିବ ଓ କାର୍ଯ୍ୟକ୍ଷେତ୍ରରେ ପରୀକ୍ଷା କରିନେବ ।

ସବୁ ବିଷୟରେ ସହଜ, ସରଳ ଓ ସ୍ୱାଭାବିକ ହେବାକୁ ଚେଷ୍ଟା କରିବ । ଅସ୍ୱାଭାବିକ ଓ ଅପ୍ରାକୃତ ଭାବଭଙ୍ଗୀ ଦେଖାଇବ ନାହିଁ । ଶଙ୍କାନ୍ୱିତ ଲୋକଙ୍କଠାରେ ଏ ରୂପ ଅସ୍ୱାଭାବିକ ଓ ବିକୃତ ଭାବଭଙ୍ଗୀ ପରିଦୃଷ୍ଟ ହୁଏ । କିନ୍ତୁ ସାଧନା ବଳରେ କ୍ରମେ ଉନ୍ନତି କରିବା ସଙ୍ଗେ ସଙ୍ଗେ ଆପଣାର ସ୍ୱାଭାବିକ ଭାବଭଙ୍ଗୀ ଫେରି ଆସିବ ।

ଏହିରୂପ ସାଧନାରେ ସିଦ୍ଧିଲାଭ କରି ସମ୍ପୂର୍ଣ୍ଣରୂପେ ମନରୁ ଶଙ୍କା ଦୂର କରିବା ପରେ, ଅନ୍ୟ ସ୍ୱଗୁଣଗୁଡ଼ିକର ଉନ୍ନତି କରିବାକୁ ଯତ୍ନ କରିବ । ନିଜର ପ୍ରତିଭାର ବିକାଶ କରି ତଦ୍ୱାରା ଲୋକମାନଙ୍କର ଦୃଷ୍ଟି ଆକର୍ଷଣପୂର୍ବକ ପ୍ରଶଂସା ଭାଜନ ହେବାକୁ ଚେଷ୍ଟା କରିବ । ଏ ସାଧନା ବଳରେ ମନ ଉପରେ ଅଧିକାର ଆସିଥିବାରୁ ଏସବୁ ଉଦ୍ୟମ ସହଜସାଧ୍ୟ ହେବ ।

ଏ ରୂପ ସାଧନାରେ ଯଦି ଜଣେ ମନ ଚିକିତ୍ସାବିତ୍ କିମ୍ବା କୌଣସି ବଳିଷ୍ଠମନା ଗୁରୁଜନ ସାହାଯ୍ୟ କରୁଥାନ୍ତି, ତେବେ ତାଙ୍କୁ ବିଶେଷ ସତର୍କଭାବ ସହିତ ଅଗ୍ରସର ହେବାକୁ ହେବ । ସେ ପ୍ରଥମେ ଚେଷ୍ଟା କରିବେ, କିପରିଭାବେ ତାଙ୍କ ରୋଗୀର ବିଶ୍ୱାସ-ଭାଜନ ହୋଇ ପାରିବେ । ଏଥିପାଇଁ ରୋଗୀକୁ ନାନା ବିଷୟରେ ପ୍ରଶଂସା କରିବେ । ରୋଗୀର ଗୁଣଗୁଡ଼ିକର ପ୍ରଶଂସା କରି ତା'ର ମନରେ ଆତ୍ମପ୍ରତ୍ୟୟ ଜାଗ୍ରତ କରାଇ ଦେବ । ଏହାଦ୍ୱାରା ମଧ୍ୟ ସେ ଶଙ୍କାଗ୍ରସ୍ତ ରୋଗୀର ବିଶ୍ୱାସ ଭାଜନ ହେବେ । ତାଙ୍କ ନିକଟରେ ମନର ଭାବନା ପ୍ରକାଶ କରିବାକୁ ରୋଗୀ କୁଣ୍ଠିତ ହେବେ ନାହିଁ । ଆଉ ମଧ୍ୟ ନିଜର ଗୁରୁତ୍ୱ ଓ ବିଶେଷତ୍ୱ ବୁଝିପାରିଲେ, ତା'ର ମନରେ ଆତ୍ମପ୍ରତ୍ୟୟ ଓ ଆତ୍ମମର୍ଯ୍ୟାଦା ଜାତ ହେବ । ଚିକିତ୍ସକ ସର୍ବଦା ଚେଷ୍ଟା କରିବେ, କିପରି ରୋଗୀ ଆତ୍ମ-ନିର୍ଭର-ଶୀଳ ହେବ । ସେ ପ୍ରତ୍ୟେକ ବିଷୟରେ ରୋଗୀକୁ ଏହି ଦୃଷ୍ଟିରୁ ପରିଚାଳିତ କରିବେ । ପ୍ରତ୍ୟେକ ବିଷୟରେ ସେ ଯେପରି ଚିକିତ୍ସକଙ୍କର ସାହାଯ୍ୟ ନଲୋଡ଼େ, ସେ ବିଷୟପ୍ରତି ଦୃଷ୍ଟିଦେବେ ।

ଗୋଟିଏ ଶିଶୁ ଚାଲିବାକୁ ଆରମ୍ଭ କରିବାବେଳେ, ତା'ର ପାଦ ଅସ୍ଥିର ଥାଏ । ସେ ଚାଲିବାକୁ ସକ୍ଷମ, ଏ ବିଶ୍ୱାସ ତା'ର ନଥାଏ । ଚାଲିବାରେ ତାକୁ ଉତ୍ସାହ ଦେଲେ ଓ ହସ୍ତ ପ୍ରସାରଣ

କର ଗୋଟିଏ ଅଙ୍ଗୁଳି ତାକୁ ଧରାଇ ଦେଲେ, ସେ ସେଥିରୁ କ୍ଷୀଣ ଅଶ୍ରାରେ ଚାଲିବାକୁ ସକ୍ଷମ ହୁଏ । କ୍ରମେ ଧରିବାକୁ ନଦେଇ କେବଳ ଅଙ୍ଗୁଳି ବଢ଼ାଇଦେଲେ, ସେ ଚାଲିପାରେ । କାରଣ ତା'ର ବିଶ୍ୱାସ ହୁଏ ଯେ ଯଦି ତାର ପଦ ସ୍ଖଳନ ହୁଏ, ତେବେ ସେ ଅଙ୍ଗୁଳି ତାକୁ ଯଥା ସମୟରେ ସାହାଯ୍ୟ ଦେଇ ଭୂପତନରୁ ରକ୍ଷା କରିବ । ଅତଏବ ସେଥିରୁ ଅଙ୍ଗୁଳିର ଅଶ୍ରାରେ ପୂର୍ବରୁ ଚାଲିବାକୁ ସମର୍ଥ ହୋଇଥାଏ ବୋଲି ତାର ସେ ଅଙ୍ଗୁଳି ପ୍ରତି ଓ ନିଜର ଶକ୍ତି ଉପରେ ବିଶ୍ୱାସ ଆସି ଯାଇଥାଏ ।

ଶଙ୍କାଗ୍ରସ୍ତଲୋକ ଠିକ୍ ଏହିପରି ଶିଶୁଟିଏ । ଶିଶୁ ଚାଲିବାରେ ମାଆ ତାକୁ ସାହାଯ୍ୟ କଲାପରି, ଶକ୍ତିଗୁରୁ ଶଙ୍କାଗ୍ରସ୍ତ ରୋଗୀକୁ ଅନୁଶୀଳନରେ ଶୀଳ ହେବା ଓ ଆତ୍ମପ୍ରତ୍ୟୟ ଲାଭ କରିବାରେ ସାହାଯ୍ୟ କରିବେ । ଯଦି ମାତା ଅଙ୍ଗୁଳି ପ୍ରସାରଣ କରି ସ୍ୱାଧୀନ ଭାବେ ଚାଲିବାକୁ ଶିଶୁଟିକୁ ଉତ୍ସାହିତ ନକରନ୍ତି ଓ ସର୍ବଦା ନିଜର କୋଳରେ ରଖନ୍ତି, ତେବେ ଶିଶୁଟି ଚାଲିବାକୁ ସମର୍ଥ ହୁଏ ନାହିଁ । କାରଣ ତା'ର ଆତ୍ମପ୍ରତ୍ୟୟ ଜାତହୁଏ ନାହିଁ । ସେହିପରି ଶକ୍ତିଗୁରୁ ଯଦି ପ୍ରତ୍ୟେକ ବିଷୟରେ ରୋଗୀକୁ ଉପଦେଶ ଦିଅନ୍ତି, ତେବେ ସେ ପରମୁଖାପେକ୍ଷୀ ହୋଇ ପଡ଼ିବ । ତା'ର ଆତ୍ମପ୍ରତ୍ୟୟ ଜାତ ହେବ ନାହିଁ ।

ଏ ସାଧନାରେ ସିଦ୍ଧି ଲାଭ କରିବାକୁ ହେଲେ ଦୃଢ଼ସଂକଳ୍ପ ଏକାନ୍ତ ଆବଶ୍ୟକ । ଦୃଢ଼ ସଂକଳ୍ପ ଥିଲେ, ଲୋକ ଅତୀତରେ ଦୋଷ ଦୁର୍ଗୁଣର କୃଷ୍ଣ ଆବରଣ ଛିନ୍ନ କରି ନିଜ ଅନ୍ତରର ଜ୍ୟୋତିର୍ମୟ ରୂପ ପ୍ରଦର୍ଶନ କରିବାକୁ ସମର୍ଥ ହୁଏ । ଯେପରି ଗୋଟିଏ ପ୍ରଜାପତି ସୂର୍ଯ୍ୟାଲୋକ ଓ ଯତ୍ନର ଅଭାବରୁ ତା'ର କୁତ୍ସିତ କୋଷର ଆବରଣ ଭେଦକରି ବାହାରକୁ ଆସି ନିଜର ମନୋହର ଛବିଳ ରୂପରେ ଦର୍ଶକମାନଙ୍କୁ ମୁଗ୍ଧ କରିପାରେନାହିଁ, ସେହିପରି ସାଧନା ଓ

ସତ୍ତ୍ୱର ଅଭାବରେ ଶଙ୍କାଶୀଳ ଲୋକ ଶଙ୍କାର କୃତ୍ରିମ ଆବରଣ ଭେଦକରି ସ୍ୱୀୟ ପ୍ରତିଭାର ବିକାଶରେ ନିଜର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିପାରେନାହିଁ । କିନ୍ତୁ ଉତ୍ସାହ ଓ ଧୈର୍ଯ୍ୟର ସହିତ ଟିକିଏ ଚେଷ୍ଟାକଲେ ସେ ତାହାର ଦୋଷ ଦୂରକରି ଅନ୍ତରର ପ୍ରତିଭା ଓ ସୁଗୁଣାବଳୀରେ ଲୋକ ସମାଜରେ ପ୍ରତିଷ୍ଠା ଅର୍ଜନ କରିବାରେ ସମର୍ଥ ହୁଏ ।



ଏଗାର

# ଆତ୍ମ-ମୂଲ୍ୟ-କଳନା

ଅତ୍ମ-ମୂଲ୍ୟ-କଳନା ଉନ୍ନତି ପଥର ପାଥେୟ ସ୍ୱରୂପ । ଯେ କୌଣସି କାର୍ଯ୍ୟ ସାଧନରେ ଏହା ପ୍ରଧାନ ସହାୟକ । ବ୍ୟକ୍ତିତ୍ୱର ଅଟ୍ଟାଳିକା ଏହି ଅତ୍ମ-ମୂଲ୍ୟ-ଜ୍ଞାନର ସୁଦୃଢ଼ଭିତ୍ତି ଉପରେ ନିର୍ମିତ ହୁଏ । ଆତ୍ମ-ମୂଲ୍ୟ-କଳନାର ସୋପାନ ସାହାଯ୍ୟରେ ଖ୍ୟାତି ଓ ଯଶର ଉନ୍ନତ ଶିଖର ଅରୋହଣ କରିବାକୁ ହୁଏ । ଯାହାର ନିଜ ଉପରେ ବିଶ୍ୱାସ ନାହିଁ, ଯେ ନିଜର ସୁଗୁଣରାଜି ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ, ସେ କୌଣସି କାର୍ଯ୍ୟ ସମ୍ପାଦନ କରିବାକୁ ସମର୍ଥ ହୁଏନାହିଁ ।

ଅତ୍ମ-ମୂଲ୍ୟ-ଜ୍ଞାନ କହିଲେ ଅତ୍ମ-ବଡ଼ିମା ବୁଝିବାକୁ ହେବନାହିଁ । ଅତ୍ମ-ବଡ଼ିମା ଓ ଅତ୍ମ-ଗର୍ବ ଅଯଥା ଲୋକକୁ ସ୍ଫୀତ ଓ ଉତ୍‌ଫୁଲ୍ଲ କରେ । ସେ ନିଜକୁ ଅତି ବଡ଼ ଆଖିରେ ଦେଖେ । କେହି ତାହାର ସମକକ୍ଷ ନୁହନ୍ତି ବୋଲି ତା'ର ସୁଦୃଢ଼ ଭ୍ରାନ୍ତ ଧାରଣା ଜାତହୁଏ । ନିଜର ସୁଗୁଣଗୁଡ଼ିକୁ ଅତିରଞ୍ଜନ କରି ଦେଖିବାକୁ ତା'ର ଭ୍ରାନ୍ତ ଅଭ୍ୟାସ । ସେ ବିଷ୍ଠ ମନ୍ଦ ନଜାଣି

ସର୍ପବିଳରେ ହସ୍ତ ସନ୍ନିବେଶ କରେ । ତେଣୁ ବାସ୍ତବତାର ଅନ୍ଧ ଦଂଶନରେ ସେ ବିଫଳତାର ଲଜ୍ଜାଜନକ ଭାବରେ ଘାରିହୋଇ ଯନ୍ତ୍ରଣା ଭୋଗ କରେ ।

ଅନ୍ୟାଦିଗକୁ ଦେଖିଲେ ଯେଉଁ ଲୋକ ନିଜ ମୂଲ୍ୟର ତୁଳନା କଳନା କରି ନଥାଏ, ସେ ନିଜର ସ୍ୱତ୍ଵଗୁଣାବଳି ବିଷୟରେ ସଚେତନ ନଥାଏ । ଯାହାର ଅମ୍ଳ-ପ୍ରତ୍ୟୟ ନଥାଏ, ସେ ପ୍ରତ୍ୟେକ ବିଷୟରେ ନିଜକୁ ହୀନ, ନିକୃଷ୍ଟ, ଅଯୋଗ୍ୟ ଓ ଅସମର୍ଥ ଭାବେ । କୌଣସି କାର୍ଯ୍ୟରେ ହାତ ଦେବାକୁ ତା'ର ସାହାସ ହୁଏ ନାହିଁ । ପ୍ରତ୍ୟେକ ବିଷୟରେ ଶଙ୍କାକୁଳ ହୋଇ ସେ କିଛିମାତ୍ର କରିବାକୁ ସମର୍ଥ ହୁଏ ନାହିଁ । ତେଣୁ ନିଜର ଶକ୍ତି ଥିବା ସତ୍ତ୍ୱେ ସେ ଅକିଞ୍ଚନ ଭାବେ ଜୀବନ ଯାପନ କରେ । ସ୍ୱୀୟ ପ୍ରତିଭାର ବିକାଶ କରି ସେ ସମାଜରେ ଅମ୍ଳ-ପ୍ରତିଷ୍ଠା ଲାଭ କରି ପାରେ ନାହିଁ । ବର୍ଣ୍ଣମାଳିକାପରି ତା'ର ପ୍ରତିଭା ଲୋକଲୋଚନ ଅନ୍ତରାଳରେ ରହି ଶେଷରେ ମଉଳିଯାଏ ।

କିନ୍ତୁ ଯେଉଁ ଲୋକ ନିଜ ଶକ୍ତିର କଳନା କରିଥାଏ, ସେ ନିଜର ସ୍ୱଗୁଣରାଜି ବିଷୟରେ ସଚେତନ ଓ ଜାଗ୍ରତ ଥାଏ । ନିଜର ଶକ୍ତି ଓ ସାମର୍ଥ୍ୟକୁ ସେ ଅତିରଞ୍ଜିନ କରି ଦେଖେ ନାହିଁ । ତାକୁ ଅପଣାର ଦୋଷ ଗୁଣ ଉଭୟ ପରିଷ୍କାର ଭାବେ ଜଣା ଥାଏ । ତେଣୁ ନିଜର ଦୋଷ ଦୂରକରି ଗୁଣର ବିକାଶ କରିବାରେ ସେ ସମର୍ଥ ହୁଏ । ଏହିପରି ଲୋକ ଦୁନିଆରେ ପ୍ରତିଷ୍ଠା ଲାଭ କରିଥାନ୍ତି ।

ଅଭ୍ୟାନୁଶୀଳନ ଦ୍ୱାରା ଦୋଷଗୁଣର କଳନା କରିବାକୁ ଯାଇ କେତେକ ଲୋକ ଅପଣା ଦୋଷର ମାତ୍ରା ଦେଖି ହତୋତ୍ସାହ ହୋଇ ପଡ଼ିଥାନ୍ତି । କିନ୍ତୁ ଏପରି ହତୋତ୍ସାହ ହେବାର କୌଣସି

କାରଣ ନାହିଁ । ମନୁଷ୍ୟ ନିର୍ଦ୍ଦୋଷ ଓ ସର୍ବଗୁଣ ସମ୍ପନ୍ନ ହେବା ଅସମ୍ଭବ । ଏପରିକି ମହାପୁରୁଷ ମାନଙ୍କର ଚରିତ୍ର ଅନୁଶୀଳନ କଲେ ଦୋଷ ଦେଖିବାକୁ ମିଳିବ । ତେଣୁ ନିଜର ଦୋଷ ଦୁର୍ବଳତା ଦେଖି ହତୋତ୍ସାହ ନହୋଇ, ଦୃଢ଼ ମନରେ ସେ ସବୁକୁ ଦୂର କରି ସୁଗୁଣ ଓ ଶକ୍ତି ଲାଭ କରିବାକୁ ଚେଷ୍ଟା କରିବା ଉଚିତ୍ । ଚେଷ୍ଟାର ଅସାଧ୍ୟ କିଛି ନାହିଁ । ଦୃଢ଼ ମନରେ ଚେଷ୍ଟା କଲେ ଦୋଷ ଓ ଦୁର୍ବଳତା ଦୂର କରି ଶକ୍ତି ଓ ସୁଗୁଣ ଲାଭ କରାଯାଇ ପାରେ ।

ବ୍ୟକ୍ତିତ୍ୱ ଗଠନରେ କାହାର ଚରିତ୍ରକୁ ଅନୁକରଣ କରିବା ଉଚିତ ନୁହେଁ । ଏପରିକି ମହାପୁରୁଷମାନଙ୍କୁ ଅନ୍ଧଭାବେ ଅନୁକରଣ କରିବା ଅନୁଚିତ । ଏପରି କଲେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ବିକାଶ ହୁଏନାହିଁ । ଯେପରି କୌଣସି ଦୁଇ ଲୋକଙ୍କର ଏକାରକମ ରୂପ ଦେଖିବାକୁ ମିଳେ ନାହିଁ, ସେହିପରି କୌଣସି ଦୁଇଜଣଙ୍କର ଗୁଣ ଓ ବ୍ୟକ୍ତିତ୍ୱ ସମାନ ନୁହେଁ । ପ୍ରତ୍ୟେକର ଭିନ୍ନ ଗୁଣ ଓ ଭିନ୍ନ ଶକ୍ତି । ଏହି ବିଭିନ୍ନତାରେ, ଏହି ବୈଷମ୍ୟରେ ବିଶିଷ୍ଟତା ନିହିତ ଅଛି । ତେଣୁ ନିଜର ବ୍ୟକ୍ତିତ୍ୱ ଓ ସ୍ୱତନ୍ତ୍ରତା ରକ୍ଷା କରିବାକୁ ଅନ୍ୟକୁ ଅନୁକରଣ କରିବ ନାହିଁ । ନିଜର ବିଶିଷ୍ଟତାରେ ଗୌରବ ଅଛି, ଶ୍ରେଷ୍ଠତ୍ୱ ଅଛି । ଗୁଣହୀନ ଲୋକ ମନୁଷ୍ୟ ସମାଜରେ ନାହିଁ । ଏପରି କି ନିତାନ୍ତ ନୀଚ ଶ୍ରେଣୀର ଲୋକଠାରେ କିଛି ନା କିଛି ସୁଗୁଣ ଦେଖିବାକୁ ମିଳେ । ସେହି ସୁଗୁଣର ବିକାଶ ହେଲେ, ତା'ର ପ୍ରତିଷ୍ଠା ଲୋକ ଚକ୍ଷୁରେ ଝଲ ଉଠେ ।

ଗୁଣ ଓ ଦୋଷର ସମାହାରରେ ବ୍ୟକ୍ତିତ୍ୱ ଗଠିତ । ଦୋଷ ଓ ଦୁର୍ବଳତାର ମଧ୍ୟ ଗୋଟିଏ ଉଜ୍ଜ୍ୱଳ ଦିଗ ଅଛି । କେତେକ

ସାମାନ୍ୟ ଓ ନଗଣ୍ୟ ଦୋଷ ମଧ୍ୟ ବ୍ୟକ୍ତିତ୍ୱର ବିକାଶକୁ ପୂର୍ଣ୍ଣତା ଦାନ କରେ । ସବୁ ଫଳର ସ୍ୱାଦ ସମାନ ନୁହେଁ । ପ୍ରତ୍ୟେକର ବୈଶିଷ୍ଟ୍ୟ ଅଛି । ସେହି ବିଶେଷତା ଲାଗି ଆମ୍ଭେମାନେ ପ୍ରତ୍ୟେକଟିକୁ ଆଦର କରୁ । ଅଙ୍ଗୁରରେ ସାମାନ୍ୟ ଅମ୍ଳ ଥିଲେ ସୁଦ୍ଧା ତାହା ଆମ୍ଭମାନଙ୍କର ଅତି ପ୍ରିୟ ଓ ଉପାଦେୟ ଖାଦ୍ୟ । ଅମ୍ଭେମାନେ ଏହି ଅମ୍ଳତ୍ୱକୁ ଘୃଣା କରୁନାହୁଁ । ସେହିପରି ସାମାନ୍ୟ ଦୋଷ ବିଶିଷ୍ଟ ଗୁଣବାନ୍ ଲୋକକୁ ଆମ୍ଭେମାନେ ଆଦର କରିଥାଉଁ । ତାଙ୍କର ଦୋଷ ଆମ୍ଭମାନଙ୍କର ଦୃଷ୍ଟିରେ ପଡ଼େ ନାହିଁ । ସାମାନ୍ୟ ଦୋଷ ଅନେକ ସମୟରେ ଲୋକର ମହତ୍ତ୍ୱକୁ ବୃଦ୍ଧି କରେ ।

ଅନେକ ସମୟରେ ଦେଖାଯାଇ ଥାଏ, ପିଲା ଅହଙ୍କାର ଓ ଆତ୍ମ-ଗର୍ବମାନରେ ସ୍ଫୀତ ହୋଇଯିବ ବୋଲି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ପିତାମାତା ଓ ଅଭିଭାବକମାନେ ପିଲାମାନଙ୍କୁ ମୁହଁ ଉପରେ ନିନ୍ଦା କରନ୍ତି । ତା'ର ଶକ୍ତି, ସୁଗୁଣ ଓ ପ୍ରତିଭାକୁ ତୁଚ୍ଛଭାବେ ବର୍ଣ୍ଣନା କରି ଥାଆନ୍ତି ଓ ସାମାନ୍ୟ ଦୋଷକୁ ଅତିରଞ୍ଜନ କରି ତାହାର ଦୁର୍ବଳତା ଦର୍ଶାଇ ଦିଅନ୍ତି । ଏହା ପିଲାମାନଙ୍କ ପକ୍ଷରେ ମାରାତ୍ମକ । ଏପରି କରିବା ଦ୍ୱାରା ପିଲାମାନଙ୍କର ଆତ୍ମ ପ୍ରତ୍ୟୟ ବିନଷ୍ଟ ହୁଏ । ସେମାନେ ନିଜର ଶକ୍ତି ସାମର୍ଥ୍ୟ କଳନା କରି ନପାରି ନିଜକୁ ତୁଚ୍ଛ, ହୀନ, ଓ ଅକ୍ଷମ ଭାବନ୍ତି । ଆତ୍ମ ପ୍ରତ୍ୟୟର ଅଭାବ ହେବାରୁ ସେମାନେ କୌଣସି କର୍ମ କରିବାକୁ ସାହସ କରନ୍ତି ନାହିଁ । କ୍ରମେ ଶଙ୍କା ସେମାନଙ୍କ ମନକୁ ଆକ୍ରମଣ କରେ । ଫଳରେ ସେମାନଙ୍କ ପ୍ରତିଭାର ବିକାଶ ହୁଏ ନାହିଁ । ଏହା କେତେ ସମ୍ଭବପର, ସେ ବିଷୟରେ ଜଣେ ମନସ୍ତତ୍ତ୍ୱବିଦ୍ ତାଙ୍କ ଆତ୍ମ-ଜୀବନ ଚରିତରେ ନିମ୍ନ ଲିଖିତ ମତେ ଗୋଟିଏ ଘଟନା ବର୍ଣ୍ଣନା କରିଛନ୍ତି ।

"ଥରେ ଗୋଟିଏ ବୁଦ୍ଧିମାନ୍ ବାଳକ ତା' ପିତାମାତାଙ୍କ ଠାରୁ ବାରମ୍ବାର ନିନ୍ଦା ଶୁଣି ଅତ୍ମପ୍ରତ୍ୟୟ ହରାଇ ଥିବାର ମୁଁ ଦେଖି ପାରିଲି । ନିଜକୁ ହୀନ ଓ ତୁଚ୍ଛ ଭାବୁ ଥିବାରୁ ସେ ବିଦ୍ୟାଧ୍ୟୟନରେ ଉନ୍ନତି କରି ପାରୁନଥିଲା । ନିଜର ସୁଗୁଣ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିବାରୁ ସେ ଅଧ୍ୟୟନରେ ମନୋନିବେଶ ନକରି, ଏହା ତାହାର ଶକ୍ତିର ବହିର୍ଭୂତ, ଏହି ଧାରଣାର ବଶବର୍ତ୍ତୀ ହୋଇ କ୍ଷିପ୍ର ମନରେ ଅଧ୍ୟୟନ ତ୍ୟାଗ କରୁଥିଲା । ସେ କୌଣସି କର୍ମକୁ ଯୋଗ୍ୟ ନୁହେଁ ଭାବି ତାର ପିତାମାତା, ତାର ଉନ୍ନତିର ଆଶା ପରିତ୍ୟାଗ କରିଥିଲେ ।"

"ମୁଁ ପ୍ରଥମେ ଗୋଟିଏ ଉପବନରେ ସେ ପିଲାଟି ସହିତ ପରିଚିତ ହୋଇ ଆଳାପ କରିବାକୁ ଆରମ୍ଭ କଲି । ମୋଠାରୁ ଟିକିଏ ଆଦର ପାଇବାରୁ ସେ ମୋ ପ୍ରତି ଅନୁରକ୍ତ ହୋଇ ପଡ଼ିଲା । ମୁଁ ପ୍ରକାରାନ୍ତରେ ପିଲାଟିର ସୁଗୁଣ ଗୁଡ଼ିକର ପ୍ରଶଂସା କରେ । କ୍ରମେ ଆମ୍ଭ ଦୁହିଁଙ୍କ ମଧ୍ୟରେ ଟିକିଏ ଘନିଷ୍ଠତା ଜନ୍ମିଲା । ପିଲାଟିର ମୋ ପ୍ରତି କ୍ରମେ ବିଶ୍ବାସ ବୃଦ୍ଧି ହେଲା । ସେ ସାହସ କରି ମୋତେ ତାର ମନକଥା କହିବାକୁ ଆରମ୍ଭ କଲା ।"

"ଉପବନରେ ଫୁଲ ଓ ପ୍ରଜାପତି ଦେଖି ପିଲାଟି ବଡ଼ ଆନନ୍ଦ ଅନୁଭବ କରୁଥିଲା । ସେମାନଙ୍କ ବିଷୟରେ ଅନୁସନ୍ଧିତ୍ସୁ ଭାବେ ସେ ଅନେକ କଥା ପ୍ରଶ୍ନ କରୁଥିଲା ।"

"ଦିନେ ମୁଁ ତାକୁ ପଚାରିଲି, 'ତୁମେ ତ ପ୍ରଜାପତି ବିଷୟରେ ଏତେ କୌତୂହଳାକ୍ରାନ୍ତ, ତେବେ ତାହା ବିଷୟରେ ଜ୍ଞାନଲାଭ କରିବାକୁ ମହାପଡ଼ି କରୁନାହଁ କାହିଁକି' ?"

"ସଙ୍ଗେ ସଙ୍ଗେ ବିସ୍ମୟ ବିସ୍ଫାରିତ ନେତ୍ରରେ ପିଲାଟି ଉତ୍ତର ଦେଲା—'ମୋ ଦ୍ବାରା କଣ ପଢ଼ାପଢ଼ି ହେବ ? ପିତାମାତା କହନ୍ତି

ମୋ ମସ୍ତିଷ୍କରେ କିଛି ନାହିଁ, ମୁଁ ବୁଦ୍ଧିହୀନ । ମୋତେ ଶିକ୍ଷାଦାନ କରିବାକୁ ଚେଷ୍ଟା କରିବା ଅର୍ଥ ବୃଥା ସମୟ ଓ ଅର୍ଥ ନଷ୍ଟ କରିବା' ।"

"ମୁଁ ପିଲାଟିର ଶକ୍ତି ଓ ସୁଗୁଣର ପ୍ରଶଂସା କରି କହିଲି— 'ତୁମେ ଥରେ ଚେଷ୍ଟା କରିବ କି ? ତୁମେ ବୁଦ୍ଧିମାନ୍; ପଢ଼ାପଢ଼ି ତୁମର ଭଲହେବ' ।"

"ଏହାପରେ ପ୍ରଜାପତିର ଜୀବନବୃତ୍ତାନ୍ତ ତାକୁ କହିଲି । କିପରି ଡିମ୍ବ ଭାବରେ ଏହାର ଜନ୍ମହୁଏ, ଡିମ୍ବରୁ କିପରି ଶୁକ (larva) ବାହାରେ, ଶୁକ ବଢ଼ି ବଢ଼ି କିପରି ଅପଣାର ମୁଖଲାଳରୁ କୋଷ ନିର୍ମାଣ କରି ତହିଁ ମଧ୍ୟରେ ଚୋପାଳି (pupa) ଭାବେ ରହେ, କିଛି ଦିନପରେ କିପରି ପ୍ରବୁଦ୍ଧ (imago) ଅବସ୍ଥାରେ କୋଷରୁ ବାହାରେ ଓ ଶେଷରେ ଛିବିଲ ଡେଣା ଚାଳନ କରି ପ୍ରଜାପତି ଭାବେ ଫୁଲ ବଗିଚାରେ ଉଡ଼ିବୁଲେ, ଏସବୁ ବିଷୟରେ ତାକୁ ଭଲଭାବେ ବୁଝାଇଦେଲି । ପ୍ରଜାପତିର ଜୀବନ ବୃତ୍ତାନ୍ତ ବିଷୟରେ ଅଧିକ ଜାଣିବାକୁ ଗୋଟିଏ ସୋଭିଏ ବହି ଅଣି ପଢ଼ିବାକୁ କହିଲି । ଏଥିରେ ଛବିସହ ପ୍ରଜାପତିର ଜୀବନ ଇତିହାସ ବିଶଦ ଭାବେ ବର୍ଣ୍ଣନା କରାଯାଇଛି ବୋଲି ବତାଇଦେଲି । ପିଲାଟି ମୋ କଥା ଖୁବ୍ ଏକମନ ଏକ ଧ୍ୟାନରେ ଶୁଣିଗଲା ଓ ବହି ଦୁଇଟିର ନାମ ଟିପିନେଲା । ତହିଁ ଅରଦିନ ସେ ଆସି ମୋତେ କହିଲା—'ଆପଣ ପ୍ରଜାପତି ସମ୍ବନ୍ଧେ ଯାହା କହୁଥିଲେ, ମୁଁ ସେସବୁ ବହିରେ ପଢ଼ିବାକୁ ପାଇଲି । ବଡ଼ କୌତୁହଳ ପୂର୍ଣ୍ଣ ବିଷୟ ସତେ' ।"

"ଅଧିକ ବହି ପଢ଼ିବାକୁ ମୁଁ ତାକୁ ଉପଦେଶ ଦେଲି । ଏହିରୂପେ ମୋର ଯତ୍ନ ଓ ପରିଶ୍ରମରେ ପିଲାଟିର ଅଧ୍ୟୟନ ପ୍ରତି ଆଗ୍ରହ

ଫେରିଅଛିଲେ । ସେ ନିଜର ଶକ୍ତି, ବୁଦ୍ଧିବୃତ୍ତି ଓ ପ୍ରତିଭାର କଳନା କରିପାରିଲେ । କ୍ରମେ ସେ ପିଲାଟି ବିଦ୍ୟାଧ୍ୟୟନକରି ଜଣେ ପ୍ରତିଭାଶାଳୀ, କୃତବିଦ୍ୟ ପ୍ରକୃତ-ତତ୍ତ୍ୱ-ବିତ୍ ଭାବେ ବିଶ୍ୱ ବିଖ୍ୟାତ ହେଲେ । ଯାହାକୁ ହୀନ ଭାବି ପିତାମାତା ତାର ଉନ୍ନତିର ଆଶା ପରିତ୍ୟାଗ କରିଥିଲେ, ତା'ର ବୁଦ୍ଧି, ଜ୍ଞାନ ଓ ଖ୍ୟାତି ଦେଖି ସେମାନେ ଶେଷରେ ଗର୍ବ ଅନୁଭବ କଲେ ।"

ଏହି ଘଟଣାରୁ ପିଲାମାନଙ୍କୁ ନିନ୍ଦା କରିବାଦ୍ୱାରା ସେମାନଙ୍କର ଆତ୍ମ ପ୍ରତ୍ୟୟ ନଷ୍ଟହୋଇ କିପରି ଅଧୋଗତି ହୁଏ ଏବଂ ଫଳିତ ମନୋବିଜ୍ଞାନ (applied psychology) ଅନୁମୋଦିତ ପ୍ରଶଂସାଦ୍ୱାରା ଆତ୍ମ-ମୂଲ୍ୟ-କଳନା କରିବାରେ ସେମାନଙ୍କୁ ସାହାଯ୍ୟକଲେ କିପରି ସେମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳହୁଏ, ତାହା ସହଜରେ ଅନୁମେୟ । ତେଣୁ ପିତାମାତା ଓ ଅଭିଭାବକ ପିଲାମାନଙ୍କୁ ନିନ୍ଦା ନକରି ପ୍ରଶଂସା କରିବା ଉଚିତ । ସେମାନଙ୍କ ଶକ୍ତି, ସାମର୍ଥ୍ୟ ଓ ବୁଦ୍ଧିବୃତ୍ତିର ଉତ୍କର୍ଷତା ଦେଖାଇ ଦେଲେ, ସେମାନେ ଉତ୍ସାହିତ ହୁଅନ୍ତି । ସେମାନଙ୍କ ମନରେ ଦୃଢ ଆତ୍ମପ୍ରତ୍ୟୟ ଜାତ ହୁଏ । କୌଣସି କାର୍ଯ୍ୟ କରିବାକୁ ସେମାନେ ଭୟ ବା ଶଙ୍କାରେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ମନେ ରଖିବାକୁ ହେବ ଯେ ସଫଳତା ପାଇଁ ଖାଲି ବୁଦ୍ଧି ବୃତ୍ତି ନୁହେଁ, କଠିନ ପରିଶ୍ରମ ଓ ଅଧ୍ୟବସାୟ ବିଶେଷ ପ୍ରୟୋଜନ । ଅନେକ ସ୍ଥଳରେ ଦେଖାଯାଇ ଥାଏ ଯେ ଜଣେ ବୁଦ୍ଧିମାନ୍ ଓ ମେଧାବୀ ଛାତ୍ର ପରିଶ୍ରମ ଓ ଅଧ୍ୟବସାୟ ଅଭାବରୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରେନା, ଅଥଚ ଜଣେ ସାଧାରଣ ପିଲା କଠିନ ପରିଶ୍ରମ ଓ ଅଧ୍ୟବସାୟ ବଳରେ ପ୍ରଥମ ସ୍ଥାନ ଅଧିକାର କରେ । କିନ୍ତୁ ପିଲାକୁ ତାହାର ସମ୍ମୁଖରେ ନିନ୍ଦା କଲେ, ସେ ଆତ୍ମ-ପ୍ରତ୍ୟୟ ହରାଇ ବସେ । ତେଣୁ ପରିଶ୍ରମ

ଓ ଅଧ୍ୟବସାୟ କରିବାକୁ ତାହାର ଉତ୍ସାହ ରହେନା । ସେ ମନରେ ଉଚ୍ଚାକାଙ୍‌କ୍ଷା ପୋଷଣ କରିପାରେନା । ସେ ନିଜକୁ ହୀନ ଦୃଷ୍ଟିରେ ଦେଖେ ଓ ଭାବେ, ଏସବୁ କାର୍ଯ୍ୟ ପାଇଁ ସେ ସମ୍ପୂର୍ଣ୍ଣ ଅକ୍ଷମ ଓ ଅସମର୍ଥ ।

ଗୁଣପରି ମଧ୍ୟ ପିଲାର ରୂପକୁ ପ୍ରଶଂସା କରିବ । କାରଣ ନିଜେ କୁତ୍ସିତ ଓ କଦାକାର, ଏ ଧାରଣା ପିଲାର ମନରେ ଜାତହେଲେ, ଶଙ୍କା ତାହାର ମନକୁ ଆକ୍ରମଣ କରେ । ତେଣୁ ସେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୁଏନାହିଁ । ଏପରିକି ପିଲା ଯଦି ପ୍ରକୃତରେ କୁତ୍ସିତ ଓ କୁରୂପ ହୋଇଥାଏ, ତେବେ ସେ ବିଷୟ ତାକୁ ଦର୍ଶାଇ ଦେବ ନାହିଁ । କଦାପି କହିବ ନାହିଁ ଯେ—"ତୁ ଦେଖିବାକୁ ଅସୁନ୍ଦର, ବରଂ ତାର ରୂପ ଗୁଣର ପ୍ରଶଂସା କରି କହିବ । ଯଦି ଶାରୀରିକ ସୌନ୍ଦର୍ଯ୍ୟ ଏତେ କଦର୍ଯ୍ୟ ହୋଇଥାଏ ଯେ ତାହା ଛପାଇ ରଖି ପ୍ରଶଂସା କରିହେବ ନାହିଁ, ତେବେ ପିଲାର ଗୁଣକୁ ପ୍ରଶଂସା କରିବ । ତାର ସୁଗୁଣର ତୁଳନାରେ ରୂପର ଅଭାବ କିଛିନୁହେଁ, ଏହିପରି ଧାରଣା ତା'ର ମନରେ ଜାଗରଣ କରାଇବ । ଉଦାହରଣ ସ୍ୱରୂପ ଯଦି ପିଲା ଶ୍ରେଷ୍ଠ ହୋଇଥାଏ, ତାକୁ କହିବ—"ଶ୍ରେଷ୍ଠ ହେବାରେ କଣ ଅଛି, ତୋର ଯେ ତୀକ୍ଷ୍ଣ ବୁଦ୍ଧି, ଯେ ଅତ୍ୟଧିକ ସ୍ମରଣଶକ୍ତି, ଯେ ମଧୁର ବ୍ୟବହାର, ସେଥିପାଇଁ ତୁ ସମସ୍ତଙ୍କ ନିକଟରେ ପ୍ରଶଂସା ପାଇବୁ । ଶରୀରର ରୂପ କେହି ଦେଖନ୍ତି ନାହିଁ; ସମସ୍ତେ ଗୁଣ ଦେଖନ୍ତି, ଇତ୍ୟାଦି ।" ଏହିପରି ପିଲାକୁ ଉତ୍ସାହିତ କଲେ, ତାର ଆତ୍ମ-ପ୍ରତ୍ୟୟ ଆସେ ଓ ତାର ପ୍ରତିଭାର ବିକାଶ ହୁଏ ।

ପିଲାମାନଙ୍କୁ ପ୍ରଶଂସା କରି ସେମାନଙ୍କ ମନରେ ଆତ୍ମ-ପ୍ରତ୍ୟୟ ଜାଗ୍ରତ କରାଇବ, କିନ୍ତୁ ଆତ୍ମ-ବଡ଼ିମା ଓ ଅତ୍ୟଧିକ ଆତ୍ମଗର୍ବ

ଯେପରି ସେମାନଙ୍କ ମନକୁ ଅତିକ୍ରମଣ ନକରେ ସେଥିପ୍ରତି ସତର୍କ ଥିବ ।

ସାଧାରଣତଃ ଶଙ୍କାନ୍ୱିତ ଲୋକ ଆତ୍ମଶକ୍ତିର କଳନା କରିପାରେ ନାହିଁ । ଯଦି ନିଜର ସୁଗୁଣ ଓ ପ୍ରତିଭାକୁ ସେ ବୁଝିପାରେ, ତେବେ ତାହାକୁ କ୍ରମେ ଅତିରଞ୍ଜନ କରି ଆତ୍ମ-ବଡ଼ିମାରେ ସ୍ଫୀତ ହୁଏ । ମନରେ ଏପରି ଆତ୍ମବଡ଼ିମା ଜାତହେଲେ, ସେ ଅନ୍ୟମାନଙ୍କୁ ଘୃଣାକରେ । କେହୁ ତାହାର ସମକକ୍ଷ ନୁହଁନ୍ତି ବୋଲି ତାର ଭ୍ରାନ୍ତଧାରଣା ଜାତ ହୁଏ । ଅପଣାର ଲୋକରଞ୍ଜନ ଗୁଣର ଅଭାବକୁ ସେ ଭିନ୍ନ ଭାବରେ ଅର୍ଥ କରେ । ସେ ଭାବେ, ତାର ପ୍ରତିଭା ଓ ସୁଗୁଣ ଲୋକ ସହ୍ୟ କରିନପାରି ଈର୍ଷ୍ୟାରେ ତା'ସଙ୍ଗେ ମିଳାମିଶା କରୁନାହାନ୍ତି । ନିଜର ଏହି କଳ୍ପିତା ଯୋଗେ ସେ ଲୋକ ସମାଜରେ ଅପ୍ରିୟ ହୋଇଛି । ତେଣୁ ମେଳାପି ହେବାକୁ ଚେଷ୍ଟା ନକରି ଗର୍ବୋତ୍ଫୁଲ୍ଲ ଭାବେ ନିଜର ପ୍ରତିଭାରେ ଆତ୍ମ-ପ୍ରସାଦ ଲାଭ କରି, ଆତ୍ମପୂଜାରେ ଭାଳାଡ଼ପାଡ଼ କରେ । ଅପଣାର ଶଙ୍କା ଓ ଉଚ୍ଛୃଙ୍ଖଳ ଆତ୍ମ-ଗର୍ବରୁ ସେ ଯେ ଲୋକ ସମାଜରେ ଅପ୍ରିୟ, ଏକଥା ସେ ବୁଝିପାରେ ନାହିଁ ।

କିନ୍ତୁ ଯେ ଲୋକ ଆତ୍ମମୂଲ୍ୟ କଳନା କରିଥାଏ, ତା'ର ଏ ଦୁର୍ଦ୍ଦଶା ହୁଏନାହିଁ । ସେ ନିଜର ଦୋଷଗୁଣ ଉଭୟ ବିଷୟରେ ସଚେତନ ଥାଏ । ସେ ଅପଣାର ସୁଗୁଣ ଓ ପ୍ରତିଭା ବଳରେ ଲୋକସମାଜରେ ପ୍ରତିଷ୍ଠା ଲାଭ କରିବାକୁ ଚେଷ୍ଟାକରେ । ଅନ୍ୟମାନଙ୍କ ଦ୍ୱାରା ତା'ର ଦୋଷ ଗୁଣର ସମାଲୋଚନାକୁ ସେ ଭୟ କରେ ନାହିଁ । ଅଧିକନ୍ତୁ ସେ ସମାଲୋଚନାକୁ ଅଭ୍ୟର୍ଥନା କରେ । ସାରବାନ୍ ଓ ଯୁକ୍ତିଯୁକ୍ତ କଥାରେ ତାହାର ପ୍ରତିବାଦ କରି ସତ୍ୟର ପ୍ରତିଷ୍ଠା କରିବାକୁ ଚେଷ୍ଟାକରେ । ସମାଲୋଚନାର ଅର୍ଥ

ପରୀକ୍ଷାରେ ସେ ଦୀପ୍ତସ୍ୱର୍ଣ୍ଣତୁଲ୍ୟ ଅଧିକ ଝଲି ଉଠେ । ଏହାଦ୍ୱାରା ତାହାର ସୁଗୁଣରାଜି ଉଜ୍ଜ୍ୱଳତର ଦେଖାଯାଏ ।

ଅତ ମଧ୍ୟ ନିଜର ଅଜ୍ଞାତସାରରେ ହୃଦୟରେ ପ୍ରବେଶ କରିଥିବା କୌଣସି ଦୋଷ, ସମାଲୋଚନା ଦ୍ୱାରା ତା'ର ଦୃଷ୍ଟି ପଥକୁ ଆସେ । ସେ ନିଜର ଦୋଷ ବୁଝିପାରି ସଙ୍ଗେ ସଙ୍ଗେ ତାହା ଦୂର କରିବାକୁ ଚେଷ୍ଟା କରେ ଓ ଉଚ୍ଚ ମନୋବୃତ୍ତିର ଅଧିକାରୀ ହୋଇଥିବାରୁ ଅତଶୀଘ୍ର ଉକ୍ତ ଦୋଷ ଗୁଡ଼ିକ ଦୂର କରିବାରେ ସଫଳ ହୁଏ ।

ଆତ୍ମ-ମୂଲ୍ୟ-କଳନା ଜୀବନର ଅକ୍ଷୟଶକ୍ତି ଭଣ୍ଡାରର ଦ୍ୱାର ସ୍ୱରୂପ । ଯେ ଆତ୍ମମୂଲ୍ୟ ବୁଝିପାରେ, ସେ ଶକ୍ତିର ଭଣ୍ଡାରରେ ପ୍ରବେଶ କରି, ଅସୀମ ଶକ୍ତି ଲାଭ କରେ । ଫଳରେ ଉଚ୍ଚ ଓ ଉନ୍ନତ କର୍ମ ସମ୍ପାଦନରେ ସେ ସକ୍ଷମ ହୁଏ । ଏହାଦ୍ୱାରା ତା'ର ପ୍ରତିଷ୍ଠା ଓ ଖ୍ୟାତି ଲୋକସମାଜରେ ବ୍ୟାପିଯାଏ ।

ଶକ୍ତିଲାଭ ସମସ୍ତଙ୍କର ଲକ୍ଷ୍ୟ; ଶକ୍ତିପୂଜା ସମସ୍ତଙ୍କର କାମ୍ୟ । ଏହି ଶକ୍ତି ବଳରେ ଅସାଧ୍ୟ ସାଧନା କରାଯାଇପାରେ । ତେଣୁ ଆତ୍ମମୂଲ୍ୟ କଳନା କରିବା ସର୍ବାଦୌ କର୍ତ୍ତବ୍ୟ ।



## ବାର

# ସାଧନାରେ ସିଦ୍ଧି

ମୁଖ ଅନ୍ତରର ସୂଚୀ ସ୍ୱରୂପ । ଅଙ୍ଗଭଙ୍ଗୀ ମଧ୍ୟ ମୁଖପରି ଅନ୍ତର ଭାବନାର ସୂଚନା ଦିଏ ।

କୌଣସି ବିଷୟରେ କିଛି କହିବା ପୂର୍ବରୁ ଆମ୍ଭମାନଙ୍କ ମନରେ ସେ ବିଷୟଘେନି ଭାବନାର ଉଦ୍ରେକ ହୁଏ । କ୍ରମେ ସେ ଭାବନା ଘନୀଭୂତ ହୋଇ ପୂର୍ଣ୍ଣରୂପ ଲାଭ କଲେ, ତାହା ବାକ୍ୟରେ ପ୍ରକାଶ କରାଯାଏ । ବାକ୍ୟରେ ଭାବନାଟିକୁ ପ୍ରକାଶ କରିବାର ଠିକ୍ ଅବ୍ୟବହିତ ପୂର୍ବରୁ ଓ ଭାବନା ଘନୀଭୂତ ହୋଇ ପୂର୍ଣ୍ଣତା ଲାଭ କରିବାପରେ, ଅଙ୍ଗଭଙ୍ଗୀ ଦ୍ୱାରା ତାହା ପ୍ରକାଶିତ ହୋଇପଡ଼େ । ମୁଖରେ ମଧ୍ୟ ସେ ଭାବନାର ଅସ୍ପଷ୍ଟ ଛାୟା ପ୍ରତିଫଳିତ ହୁଏ । ଠିକ୍ ଅଙ୍ଗଭଙ୍ଗୀର ପରେ ପରେ କିନ୍ତୁ ଅଙ୍ଗଭଙ୍ଗୀ ସମ୍ପୂର୍ଣ୍ଣ ନ ହେଉଣୁ ଆମ୍ଭେମାନେ ଭାବନାଟିକୁ ଭାଷାରେ ପ୍ରକାଶ କରିଥାଉ । ମନରେ ଭାବନା ଘନୀଭୂତ ହୋଇଗଲେ, ଜାଗ୍ରତ ସଚେତନ ମନର

ଅଦେଶରେ କେତେକ ମାଂସପେଶୀର ଆକୁଞ୍ଚନ ଓ ସମ୍ପ୍ରସାରଣ ହୁଏ । ମାଂସପେଶୀର ଏହି ଆକୁଞ୍ଚନ ଓ ସମ୍ପ୍ରସାରଣ ହେଉଛି ଅଙ୍ଗଭଙ୍ଗୀ ।

ଏଥିଯୋଗେ ଅନ୍ତରର ଭାବନା, ଅଙ୍ଗଭଙ୍ଗୀ ଓ ମୁଖର ବାକ୍ୟ ମଧ୍ୟରେ ସମୀଚୀନତା ଥାଏ । ଉକ୍ତ ଅଙ୍ଗଭଙ୍ଗୀ ସ୍ୱାଭାବିକ ଓ ଅନ୍ତରର ଭାବ-ବ୍ୟଞ୍ଜକ । କିନ୍ତୁ ଶଙ୍କାନ୍ୱିତ ଲୋକର ଏ ସ୍ୱାଭାବିକ ଅଙ୍ଗଭଙ୍ଗୀ ନଥାଏ । ତାହାର ଅଙ୍ଗଭଙ୍ଗୀ ଅନ୍ତର ଭାବର ପ୍ରକାଶକ ନୁହେଁ । କାରଣ କୌଣସି ବିଷୟରେ ଲୋକ ସମ୍ମୁଖରେ କିଛି କହିବାକୁ ଗଲେ ଶଙ୍କାବଶତଃ ସେ ଅପ୍ରକୃତିସ୍ଥ ହୋଇପଡ଼େ । ସେ ତାର ମାନସିକ ଭାରକେନ୍ଦ୍ର ହରାଇ ବସେ । ତେଣୁ ଭାବନାକୁ ଘନୀଭୂତ ଓ ପୂର୍ଣ୍ଣାଙ୍ଗ କରିପାରେ ନାହିଁ । ଭାବନା ବିକ୍ଷିପ୍ତ ଓ ତରଳ ଅବସ୍ଥାରେ ଥିବାରୁ ତାର ଅଙ୍ଗଭଙ୍ଗୀ ବିକୃତ ଓ ଅସଙ୍ଗତ ହୁଏ । ତାହାର ଭାଷା ମଧ୍ୟ ସେହିପରି ଅସ୍ପଷ୍ଟ ଓ ବିଖଣ୍ଡିତ । ତାର ଅଙ୍ଗଭଙ୍ଗୀ କୃତ୍ରିମ ଓ ଅସ୍ୱାଭାବିକ ବୋଧହୁଏ ।

ଅନେକ ସମୟରେ ନିଜର ଏ ଦୁର୍ବଳତା ଗୋପନ କରିବାକୁ ସେ ଅସ୍ୱାଭାବିକ ନୀରବତାର ଆଶ୍ରୟ ଗ୍ରହଣ କରେ । କିନ୍ତୁ ଅଙ୍ଗଭଙ୍ଗୀକୁ ସମ୍ପୂର୍ଣ୍ଣରୂପେ ଆୟତ୍ତ କରିପାରେ ନାହିଁ । ତା'ର ଅଜ୍ଞାତସାରରେ କେତେକ ମାଂସପେଶୀର ସଙ୍କୋଚନ ଓ ସଂପ୍ରସାରଣ ହୁଏ । ଏହାଦ୍ୱାରା ଯେ ଅଙ୍ଗସଞ୍ଚାଳନ ସୃଷ୍ଟି ହୁଏ, ତାହା ଓ ତାହାର ନୀରବତା, ତା' ଅନ୍ତରର ଭାବନାକୁ ପରିସ୍ଫୁଟ କରିଦିଏ ।

ଏ ସବୁ ଦୋଷ ଦୂର କରିବାକୁ ହେଲେ ପ୍ରଥମେ ଶଙ୍କା ଦୂର କରିବାକୁ ହେବ । ତତ୍‌ପରେ ମନ ଉପରେ ଆୟତ୍ତ ବିସ୍ତାର କରି ଚିତ୍ତ ସଂଯମ କରିବାକୁ ହେବ ।

ଏହା କରିପାରିଲେ ନିଜର ଭାବନାକୁ ଘନୀଭୂତ କରି ପୂର୍ଣ୍ଣ ରୂପରେଖ ଦେଇହେବ । ତା'ହେଲେ ଏ ରୂପ ଅସ୍ୱାଭାବିକ ଅଙ୍ଗଭଙ୍ଗୀ ଆପେ ଆପେ ଦୂର ହୋଇଯିବ ।

ଶଙ୍କାଗ୍ରସ୍ତ ଲୋକ ନମ୍ରତାର ଅଭିନୟ କରେ । ଏହାଦ୍ୱାରା ସେ ଆପଣାର ଦୋଷ ଦୁର୍ଗୁଣକୁ ପ୍ରଚ୍ଛନ୍ନ ରଖିବାକୁ ଚେଷ୍ଟାକରେ । ଅତ୍ୟଧିକ ବିନୟ ସୁଗୁଣ ନୁହେଁ । ଏହା ଶଙ୍କାପର ମଧ୍ୟ ଗୋଟିଏ ଦୋଷ । ଏପରି ଲୋକ ନିଜର ଦୁର୍ବଳତା ଯୋଗୁ କୌଣସି ବିଷୟରେ ପ୍ରତିବାଦ ବା ତର୍କ କରିପାରନ୍ତି ନାହିଁ । ପରିପନ୍ଥୀଲୋକଙ୍କ ନିକଟରେ ମସ୍ତକ ଅବନତ କରି ତାହାଙ୍କର ମତକୁ ଗ୍ରହଣ କରି ନିଅନ୍ତି । ସେ ମତର ଯଥାର୍ଥତାର ବିଚାର କରନ୍ତି ନାହିଁ । ଏହାଦ୍ୱାରା ନମ୍ରତାର ଆବରଣ ମଧ୍ୟରେ ନିଜର ଦୁର୍ବଳତାକୁ ଗୋପନ କରି ରଖନ୍ତି । ଏତାଦୃଶ ଆଚରଣ ଦୁର୍ବଳମନର ପରିଚୟସୂଚକ । ଏପରି ଲୋକର ପ୍ରତିଭା ଥିଲେ ସୁଦ୍ଧା ତାହାର ବିକାଶ ହୁଏ ନାହିଁ । କେଉଁ ଶ୍ରେଣୀର ଲୋକ ଜୀବନ ସଂଗ୍ରାମରେ ଜୟଯୁକ୍ତ ହୁଏ, ତାହା ତଳ ଲିଖିତ ଉପାଖ୍ୟାନଟିରୁ ସୁସ୍ପଷ୍ଟ ହେବ ।

"ଥରେ ଅନେକ ଗୁଡ଼ିଏ ଲୋକ ଗୋଟିଏ ସୁନ୍ଦର ଓ ସୁଦୂର ଦେଶକୁ ଯିବା ନିମନ୍ତେ ସଙ୍ଗହୋଇ ଯାତ୍ରା ଆରମ୍ଭ କଲେ । କିନ୍ତୁ କ୍ରମେ କ୍ରମେ ସେମାନଙ୍କର ସଂଖ୍ୟା ହ୍ରାସ ହେଲା । ପ୍ରଥମେ ଭୀତତ୍ରସ୍ତ ଲୋକମାନେ ପଥର ଭୀଷଣତା ଦେଖି ଯାତ୍ରା ତ୍ୟାଗକଲେ । ତତ୍ପରେ ଶଙ୍କାନ୍ୱିତ ଲୋକମାନେ ପ୍ରେରଣା ଓ ଦୃଢ଼ ସଂକଳ୍ପର ଅଭାବରୁ ବାହୁଡ଼ି ଆସିଲେ । ବିନୟୀ ଓ ନମ୍ର ଲୋକମାନେ କଷ୍ଟଦାନ ଯାତ୍ରା କଲପରି, ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବା ଭୟରେ ପଛରେ ପଡ଼ି ରହିଲେ । ଉଦାସୀନ ଓ ଉତ୍ସାହହୀନ ଯାତ୍ରୀଗଣ କ୍ଲାନ୍ତ ଓ ଅବସାଦରେ ପଥପାର୍ଶ୍ୱସ୍ଥ ତରୁତଳେ ବିଶ୍ରାମ ନେଲେ ଓ

ଦକ୍ଷିଣଂଶର ଅବଶ୍ୟକତା ବସ୍ତୁର ନଦୀର ଖାଦ୍ୟପେୟରେ ସମସ୍ତ ପାଥେୟ ନିଃଶେଷ କରିଦେଲେ । ଛନ୍ନମତି ଓ ଭୀରୁ ପ୍ରକୃତି ଯାତ୍ରୀମାନେ ପ୍ରଥମେ ଅତ୍ୟନ୍ତ ଉତ୍ସାହର ସହିତ କିଛିଦୂର ଅଗ୍ରସର ହୋଇ ବିପଦର ଆଶଙ୍କା ଦେଖିବା ମାତ୍ରେ ପୃଷ୍ଠଭଙ୍ଗ ଦେଇ ପଳାୟନ କଲେ । ଈର୍ଷ୍ୟା ପରାୟଣମାନେ ଅଗ୍ରଗାମୀ ଯାତ୍ରୀମାନଙ୍କର ଉତ୍ସାହ ଓ ସାହସରେ ଅନୁପ୍ରାଣିତ ହୋଇ ସେମାନଙ୍କର ସମାସ୍କନ୍ଧ ହେବାକୁ ଚେଷ୍ଟାକରିବା ପରିବର୍ତ୍ତେ ସେମାନଙ୍କ ମାର୍ଗରେ ନାନାବିଧ ପ୍ରତିବନ୍ଧକ ସୃଷ୍ଟିକଲେ । କିନ୍ତୁ ଶେଷରେ ନିଜେ ସେହି ପ୍ରତିବନ୍ଧକରେ ଆଘାତ ପ୍ରାପ୍ତହୋଇ ହସ୍ତପଦ କ୍ଷତବିକ୍ଷତ କଲେ । ଦୁଃସାହସୀ ପଥିକମାନେ ନିଜର ପ୍ରଗଲ୍‌ଭତା ଓ ନିର୍ବୋଧତାରୁ ମୃତ୍ୟୁମୁଖରେ ପତିତ ହେଲେ । ଅବଶେଷରେ ଅଳ୍ପ କେତେଜଣ ମାତ୍ର ସେହି ସୁନ୍ଦର ଓ ସୁଦୂର ରାଜ୍ୟରେ ଉପନୀତ ହେଲେ । ସେଇମାନେ ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହେଲେ, ସେମାନେ ଉତ୍ସାହୀ, ଦୃଢ଼ପ୍ରତିଜ୍ଞ, ଉଚ୍ଚାଭିଳାଷୀ, ଧୀରସ୍ଥିର ଓ ସଂଯତ ।”

ଏ ଋ ଗୁଣ ଥିଲେ ଲୋକ ସାଫଲ୍ୟ ମଣ୍ଡିତ ହୁଏ, ତାହା ଉପରୋକ୍ତ ଆଖ୍ୟାୟିକାଟିରୁ ସ୍ପଷ୍ଟ ପ୍ରତିଭାତ ହେବ । ତେଣୁ ତୋତ ଦୂରକରି ସେସବୁ ସୁଗୁଣ ଲାଭ କରିବା ପ୍ରତ୍ୟେକ ଲୋକର କର୍ତ୍ତବ୍ୟ ।

ଜୀବନ ଅସାର ନୁହେଁ । ଏହା ଦଣ୍ଡଭୋଗୀର ବନ୍ଦୀଶାଳା ନୁହେଁ, କି ଅଭିଶପ୍ତର ନରକପୁର ନୁହେଁ । ଐନ୍ଦ୍ରଜାଳିକର କୁହୁକପରି ଜୀବନ ମାୟାର କୁହେଳି ନୁହେଁ । ପ୍ରକୃତିର ପ୍ରତ୍ୟେକ ପଦାର୍ଥପରି ଜୀବନ ବାସ୍ତବ ଓ ପ୍ରାକୃତ । ଜନ୍ମାନ୍ତରୀଣ ଦୁଷ୍କୃତରୁ ଜୀବନର ସୃଷ୍ଟି ନୁହେଁ । ଏହାର ସୃଷ୍ଟି ମଧ୍ୟ ହେତୁହୀନ ଓ ଅର୍ଥହୀନ ନୁହେଁ । ସୂର୍ଯ୍ୟ ଚନ୍ଦ୍ରର ଉଦୟ ଅସ୍ତ ପରି ସେହି ପ୍ରାକୃତିକ ନିୟମରେ ଏହାର ଉଦୟ, ବିକାଶ ଓ ବିଲୟ ନିୟନ୍ତ୍ରିତ ।

ଜୀବ ଜଗତରେ ମନୁଷ୍ୟ ଶ୍ରେଷ୍ଠ । ସେ ଉଦ୍ଭିଦମାନଙ୍କ ପରି ଅବସ୍ଥାର ବା ପରିସ୍ଥିତିର ଦାସ ନୁହେଁ । ଘଟନା ସ୍ରୋତରେ ଭାସିଯିବା ତା'ର ଧର୍ମ ନୁହେଁ । ବୁଦ୍ଧି, ବିବେକ, ବିଚାରଶକ୍ତି ପ୍ରଭୃତି ଅତି ଉଚ୍ଚ କୋଟିର ଉନ୍ନତ ମନୋବୃତ୍ତିର ସେ ଅଧିକାରୀ । ସେ ତାହାର ବୁଦ୍ଧିବଳରେ ଘଟନା ସ୍ରୋତର ଗତିରୋଧ କରି ପାରେ, ପରିସ୍ଥିତିର ପରିବର୍ତ୍ତନ କରିପାରେ । ସେ ପରିସ୍ଥିତିର ସ୍ରଷ୍ଟା; ଆପଣାର ଭାଗ୍ୟବିଧାତା । ସ୍ୱୀୟ ମନୋମତ ପରିସ୍ଥିତି ସୃଷ୍ଟିକରି ସେ ନିଜର ଗତିପଥ ଓ ବିକାଶ ନିର୍ଦ୍ଧାରଣ କରିପାରେ । ଜୀବନର ଗତିପଥ ସରଳ ଓ ପୁଷ୍ପ ବିମଣ୍ଡିତ ନୁହେଁ, କିମ୍ବା ଦୁର୍ଗମ କଣ୍ଟକମୟ ନୁହେଁ । ଏହା ବାସ୍ତବତାର ପିଚ୍ଛିଳ ମୃତ୍ତିକା ଉପରେ ବିଲମ୍ବିତ । କିନ୍ତୁ ଏ ପିଚ୍ଛିଳପଥ ପାର ହେବାକୁ ମନୁଷ୍ୟର ବୁଦ୍ଧି ଓ ସାହସ ଅଛି । ସେ ତାହାର ଗୁଣାବଳୀର ସଦ୍ ବ୍ୟବହାର କଲେ, ଅବଲୀଳାକ୍ରମେ ଏ ପଥ ଅତିକ୍ରାନ୍ତ ହେବ । ବୁଦ୍ଧିବଳରେ ସେ ଜୀବନକୁ ସରସ, ପ୍ରାଣବନ୍ତ ଓ ଉପଭୋଗ୍ୟ କରି ପାରିବ ।

ପ୍ରକୃତି ରହସ୍ୟମୟୀ, କିନ୍ତୁ ଶକ୍ତିଦାୟିନୀ । କେଉଁ ଅଦମ କାଳରୁ ସେ ସୃଷ୍ଟିକରି ଚାଲିଛି । ସେହି ଚିରନ୍ତନୀ ସୃଷ୍ଟିର ଗୌରବରେ ସେ ସତତ ମୁଗ୍ଧା । ବୁଦ୍ଧିବଳରେ ପ୍ରକୃତିର ରହସ୍ୟ ଭେଦକଲେ, ସୃଜନ ପ୍ରତିଭାର ବିକାଶ ଓ ବ୍ୟବହାରରେ ନୂତନ ସର୍ଜନା କରି ତା'ର ସୃଷ୍ଟିର ତାନସଙ୍ଗେ ତାନ ମିଳାଇଲେ, ସେ ତାହାର ଗୋଟିଏ ଗୋଟିଏ ଶକ୍ତି ପ୍ରତିଭାଶାଳୀର ସେବାରେ ନିୟୋଜିତ କରେ । ଏହିପରି ଭାବେ ମନୁଷ୍ୟ ବ୍ୟକ୍ତିଗତ ଓ ସମୂହଭାବେ ପ୍ରକୃତିର ରହସ୍ୟ ଭେଦକରି ସ୍ୱୀୟ ସୃଜନ ପ୍ରତିଭା ବଳରେ ନୂତନ ସୃଷ୍ଟିକରି ଜୀବନକୁ ସ୍ପୃହଣୀୟ ଓ ଉପଭୋଗ୍ୟ କରିପାରିଛି । ବ୍ୟୋମଚର ପକ୍ଷୀପରି ସେ ଆଜି ଆକାଶରେ

ଉଡ଼ିପାରୁଛି, ଜଳଚର ମୀନପରି ଅତଳ ସାଗର ଗର୍ଭରେ ଯାତାୟାତ କରୁଛି, ମେଘ ଓ ବୃଷ୍ଟି ସୃଷ୍ଟି କରିପାରୁଛି; କୁସଂସ୍କାର ବ୍ୟାଧିର ନିରାକରଣ କରୁଛି, ଅଗ୍ନି ଓ ବାୟୁକୁ ନିଜର ସେବକରୂପେ ଖଟାଇ ପାରୁଛି, ସହସ୍ର ଯୋଜନ ଦୂରରୁ ଗୀତବାଦ୍ୟ ଶ୍ରବଣ କରୁଛି । ପରିସ୍ଥିତିକୁ ଶାସନ କରି ନିଜର ବ୍ୟକ୍ତିତ୍ୱକୁ ମନୋମତ ଗଢ଼ିପାରୁଛି । ଆଜି ଆପଣା ବୁଦ୍ଧି ବଳରେ ମନୁଷ୍ୟ କୃତ୍ରିମ ଉପଗ୍ରହ ସୃଷ୍ଟି କରିପାରୁଛି । ଚନ୍ଦ୍ର ଲୋକକୁ ରକେଟ୍ ପଠାଇ ପାରୁଛି । ନିକଟ ଭବିଷ୍ୟତରେ ମହାଶୂନ୍ୟଯାନରେ ଅନ୍ୟ ଗ୍ରହକୁ ଯାତ୍ରା କରିବାକୁ ସେ ପ୍ରୟାସ କରୁଛି । ତା'ର ଏ ପ୍ରୟାସ, ଏ ସ୍ୱପ୍ନ ଯେ ଦିନେ ସଫଳ ହେବ, ଏଥିରେ ସନ୍ଦେହ ନାହିଁ । ଜୀବନ ଅସାର, ଜୀବନର ଗତି ତା'ର ଅନାୟତ୍ତ ଭାବୁଥିଲେ, ସେ ଏ ସବୁଥିରେ କୃତକାର୍ଯ୍ୟ ହୋଇ ପାରିଥାନ୍ତା କି ?

ତେଣୁ ନିଜର ସାଧନା ବଳରେ ପ୍ରତିଭାର ବିକାଶ କରି, ଜୟଶ୍ରୀ ମଣ୍ଡିତ ହୋଇ ଜୀବନକୁ ମଧୁମୟ ଓ ଉତ୍ସବମୟ କରି ଉପଭୋଗ କରିବା ସମସ୍ତଙ୍କର କାମ୍ୟ ହେବା ଉଚିତ ।

